# କବିତା ମଞ୍ଜରୀ

ଗୋପାଳ ଚନ୍ଦ୍ର ଦାସ

୧୯୮୫

DEDICATED

WITH PERMISSION

**TO**

HENRY GIRAUD COOKE Esqr. I. C.

AS A TOKEN OF BEST REGARDS

**FOR**

Hi Sympathy and active inter

FOR

*THE URIYAS.*

# PREFACE.

These small pieces are dedicated to Henry Giraud Cooke Esqr. I. C. S. for his warm sympathy and active interest for the Uriyas. He could as readily put out his hand to wipe dust from the forehead of a common peasant who threw himself at his feet at Dasapala as to save the old Zemindar families of Kothdesh and Kendrapara. He is as anxious for the local manufacture of salt for the benefit of the people of Orissa as for Uriya continuing to be the court language in Sumbalpur for the advancement of the Uriya literature. The General Administration Report for 1894-95 shows how alive he is to the disadvantages that the Uriyas and their language have been labouring under from having been, among other things, placed under three different administrations. For such sympathy and interest this insignificant book is presented to him like the handful of water by the Chinese peasant to his Emperor.

I have to acknowledge with thanks that Babu Radhanath Rai and my much esteemed tutor Babu Madhu Sudan Rao were kind enough to revise some of the pieces.

CUTTACK
September 1895.

GOPAL BULLABH DAS.

# ଭୂମିକା ।

ଓଡ଼ିଆମାନଙ୍କ ପ୍ରିୟ ମହାମତି ଶ୍ରୀଯୁତ ହେନ୍ରି ଜରଜ୍ କୁକସାହେବ ମହୋଦୟଙ୍କର ବିଶେଷ ସହାନୁଭୂତି ଏବଂ ସେମାନଙ୍କ ମଙ୍ଗଳ ସାଧନ ନିମନ୍ତେ ବିଶେଷ ଉଦ୍ୟମ ଦେଖି ଭକ୍ତି ଓ ଶ୍ରଦ୍ଧାର ଚିହ୍ନସ୍ୱରୂପ ଏହି ସାମାନ୍ୟ ପଦ୍ୟ କେତୋଟି ତାହାଙ୍କ ନାମରେ ଉତ୍ସର୍ଗ କଲୁଁ । ସେ ମହାତ୍ମା ଦଶପଲ୍ଲା ମୁକାମରେ ଜଣେ ସାମାନ୍ୟ ପ୍ରଜାର ମୁଣ୍ଡରୁ ଧୂଳି ପୋଛି ଦେବାକୁ ଯେପରି ତତ୍ପର, କୋଠଦେଶ ଓ କେନ୍ଦ୍ରାପଡ଼ାର ପୁରୁଣା ଜମିଦାରଘରମାନଙ୍କୁ ରକ୍ଷା କରିବାକୁ ମଧ୍ୟ ସେହିପରି ତତ୍ପର ଦେଖାଯାଇ ଅଛନ୍ତି । ଓଡ଼ିଶାରେ ପୁନର୍ବାର ଲୁଣ ପୋକ୍ତାନ କରାଇ ଲୋକମାନଙ୍କର ମଙ୍ଗଳ ସାଧନ କରାଇବାପାଇଁ ଯେପରି ଚେଷ୍ଟିତ, ଓଡ଼ିଆ ସାହିତ୍ୟର ଉନ୍ନତି ପାଇଁ ସମ୍ବଲପୁରରେ ଓଡ଼ିଆଭାଷା ରହିବା ପକ୍ଷରେ ସେହିପରି ବ୍ୟଗ୍ର । ଓଡ଼ିଆମାନେ ଭିନ୍ନ ଶାସନାଧୀନରେ ଥିବାରୁ ସେମାନଙ୍କର ଓ ସେମାନଙ୍କ ଭାଷା ଉନ୍ନତି ପକ୍ଷରେ ଅସୁବିଧା ଘଟୁଅଛି ବୋଲି ସେ କିପରି ହୃଦୟଙ୍ଗମ କରି ଅଛନ୍ତି ତାହା ୧୮୯୪—୯୫ ସାଲର ବାର୍ଷିକ ରିପୋର୍ଟରୁ ପ୍ରକାଶ ପାଉଅଛି । ଏହିସବୁ ଦେଖି ଶୁଣି ଚୀନ ଦେଶର କୃଷକ ସମ୍ରାଟଙ୍କୁ ପାଣି ଅଞ୍ଜଳିଏ ଉପହାର ଦେଲାପରି ଅମ୍ଭେ ଏହି ଅକିଞ୍ଚିତକର କବିତା କେତୋଟି ତାହାଙ୍କୁ ଉପହାର ଦେଲୁଁ ।

ଏଠାରେ କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ ମାନନୀୟ ଶ୍ରୀଯୁକ୍ତ ବାବୁ ରାଧାନାଥରାୟ ଓ ଅମ୍ଭର ବାଲ୍ୟ ଗୁରୁ ଭକ୍ତିଭାଜନ ବାହାଦୁର ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓ କେତେକ ଗୋଟି କବିତା ସଂଶୋଧନ କରିଦେଇ ଚିରବାଧିତ କରି ଅଛନ୍ତି ।

କଟକ }
ସେପ୍ଟେମ୍ବର }

ଶ୍ରୀ ଗୋପାଳବନ୍ଧୁ ଦାସ ।

—:o:—

## ସୂଚିପତ୍ର ।





# କୋଣାର୍କେ ଉଷା ।

## ବଙ୍ଗଳାଶ୍ରୀ !

"କରବରକର ମର୍ଦ୍ଦନ୍ ଅମ୍ବର" ରାଗରେ ।

ଯୁକ୍ତରୁଦ୍ଧାହିନ, ସୁଧାଂଶୁମାଳିନ
ଛନ୍ଦେ, ଚନ୍ଦ୍ର·ନକ୍ଷତ୍ରବନେ
ସମ୍ମୋହନୀ ଶକ୍ତି ଧର କିଂହ ଯତ ?
ଏଥିଁ ତବ ଆଗମନେ । ୧ ।

ନିଦ୍ରିତ ଜଗତ ପଲକେ ଜାଗ୍ରତ
ଦେଖି ଶୋଭା ନବଚେତନ
ଲାବଣ୍ୟ ମାଧୁରୀ ଦଶେ ଦଶେ ଦୂର
ଜଳ ମନ ଉଚ୍ଛାଟନ । ୨ ।

ଉଠାଇ ମୁକୁଟ ରଚିଲି ଭ୍ରୁକୁଟି
ଅଦ୍ଭୁତ କେତେ ପ୍ରଭାନରେ
ଜାଗ ଶୁକ ପିକ ଚାତକ ଖାଳକ
ପାଳଥ ହୋଇଲେ ଖରେ । ୩ ।

ଶୃଙ୍ଗରଙ୍ଗ ଅଳି ଉଠେଲି କାକଳି-
ଲହରୀ ଓ ପ୍ରଲାପ ।
ଝଣାଇ ଝଙ୍କାର ନୃତ୍ୟେ ଯମ ତାଳ
ଅନ ନ ଦେଖଇ ତବ୍ । ୪ ।

ରୂପ ଗରବିଣୀ ପୁଷ୍ପିକ ଦାମ୍ପିନୀ
ପାଞ୍ଚି ଯୁବ ବସନିନୀ

ଜବା ଶେଫାଳିକା          ଚମ୍ପକ ମଲ୍ଲିକା
ଆଦି ବିଶ୍ୱବିମୋହିନୀ । ୫ ।
ପୁଲକିତ ମନେ          ସହାସ୍ୟ ବଦନେ
ରମ୍ଭା ଉରୁବଶୀ ପରି
ନୃତ୍ୟ କଲେ ରଙ୍ଗେ          ଗନ୍ଧର୍ବ ସଙ୍ଗେ
ଜନ ମନ ମୁଗ୍ଧ କରି । ୬ ।
ଗନ୍ଧର୍ବ ପ୍ରାଏ          ଭୃଙ୍ଗଗଣ ଗାଏ
ଗୀତ କେତେ ମନୋହର
ବିବିଧ ବିଭବ          ଧରାରେ ଉଦ୍ଭବ
ଲାଗି ଉଷା ଦିବ୍ୟ କର । ୭ ।
ଏହା ଦରଶନ          ପାଇ କି ସୁମନ
ଗଣ ନିଦ୍ରା ପରିହରି ।
ଶଙ୍ଖ ଘଣ୍ଟା ନାଦ          ଛଳେ ଧନ୍ୟବାଦ
ଦେଲେ ଏକ ତାନ ଧରି ? । ୮ ।
ଏହିପରି ପ୍ରତି-          ଦିନ ହୁଏ ସତି
ଭବ ଶୁଭ ଆଗମନେ
ଶୀତେ କି ବସନ୍ତେ          ବରଷା ଶରତେ
ପୁରେ ବନେ ଉପବନେ । ୯ ।
ପ୍ରସନ୍ନ ବଦନ          କରଇ ଧାରଣ
ଚରାଚର ପୁଲକିତ
ଅସ୍ତମିତ ରବି          ଧରି ଗୁରୁ ଛବି
ଉଦ୍ଭାସଇ ଧରା ଚିତ୍ତ । ୧୦ ।

ହେ ଋକ୍ଷ୍ୱାହିନ ତବ ସେ ମୋହନୀ
ଶକ୍ତି ଲଭି ନତ ପ୍ରଭ
କପାଇଁ ଉଜ୍ଜଳ ବଦନ ଉଜ୍ଜ୍ୱଳ
ହେଉ ନାହିଁ କହ ସତ । ୧୧ ।
ତୁମ୍ଭେ ବଣାଭାଷୀ ପୁରାତନ ସାକ୍ଷୀ
କାଳେ କାଳେ ବସ୍ତୁତର
ଉତ୍ଥାନ ପତନ କଲଣି ଦର୍ଶନ
କେତେ କେତେ ଅଗଣିତ । ୧୨ ।
ଦେଖ ନିରବଧି ପରଖା ଜଳଧି
ଗର୍ଜେ ପ୍ରାଚୀ କୂଳରେ
ବେଢ଼ିଛୁ ପ୍ରାକାର ଅର୍ଦ୍ଧଚନ୍ଦ୍ରାକାର
ଗିରିମାଳ ପଶ୍ଚିମରେ । ୧୩ ।
ସେହି ମହାନଦୀ ବଲଙ୍ଗ ସାଳନ୍ଦୀ
ବ୍ରାହ୍ମଣୀ ସୁବର୍ଣ୍ଣରେଖା
ପୂର୍ବେ ପରାକ୍ରତ ଏବେ ପ୍ରବାହିତ
ବୈତରଣୀ ତୀର୍ଥେ ଲେଖା ।୧୪।
ଧର୍ମ୍ମିଷ୍ଠ ନିବାସ ଗିରି କପିଳାସ
ବର୍ତ୍ତମାନ ସେହିପରି
କଷ୍ଟକେ ଚଳଦା ନୀଳାମ୍ବୁ ପାଦିକା
ଜନ ମନ ମୁଗ୍ଧ କରି ।୧୫।
ଅଛି ସିଂହପୁର ଗଡ଼ କେନ୍ଦୁଝର
ବୈତରଣୀ ଜନ୍ମସ୍ଥାନ

ଧର ଶୋଭୁଛ ଯେ ମୟୂରଭଞ୍ଜ
ପୂର୍ବ୍ବପର ବର୍ଦ୍ଧମାନ । ୧୬ ।
ଅଭ୍ର ସ୍ୱର୍ଣ୍ଣମାନଂ ଫିଙ୍ଗି ଢେଙ୍କାନାଳ
ଗଡ଼ଜାତେ ଜନମଣି
ହିନ୍ଦୋଳାଙ୍କ ପିଢ଼ ତାଳଚେର ଗଡ଼
ପଥରଁକୋଇଲା ଖଣି । ୧୭ ।
ନୀଳ କଳେବର ମୁଗୁନି ପଥର
ଯେନ ଗଡ଼ ନୀଳଗିରି ।
ବାଙ୍କୀ ଆଠଗଡ଼ ବଉଦ ନଗଡ଼
ଅରଣ୍ୟେ ବଢାଣେ ଶିରି । ୧୮ ।
ନୂଆଗଡ଼ ସମ ଭୂମି ଅନୁପମ
ଭଗିରଥ ଖଣ୍ଡପଡ଼ା
ପାଶେ ଦଶପଲ୍ଲା ଦକ୍ଷିଣେ ପାରଲା
ଲହଡ଼ା ପାଶେ ବାମଡ଼ା । ୧୯ ।
ନୁହେ ଅଳ୍ପ ବଡ଼ ସେ ହିନ୍ଦୋଳ ଗଡ଼
ପାଶେ ନରସିଂହପୁର ।
ସମୁଦ୍ର ପଡ଼ିଶା ଉପରେ କନିକା
ଅଳ ନୁହେ ଅଳ୍ପ ଦୂର । ୨୦ ।
ସର୍ବ୍ବେ ବର୍ଣ୍ଣିତ ନୁହଇ ଉଦର୍କ
କପାଳେ ସୌଭାଗ୍ୟ ଭବ ।
ଜଦରେ ପାଷାଣ ନର ଜଡ଼କାଣ୍ଡ
ଦେଖିଲେ ଉତ୍କଳ ଛବ । ୨୧ ।

ଦଶରଥ ଯେସନ          ଅଯୋଧ୍ୟା ଭୁବନ
ରାମ କରୁଁ ବନବାସ ।
ତେବେଁ ବୃନ୍ଦାବନ          ଦେବକୀ ନନ୍ଦନ
ଯାଉଁ ପିତା ମାତା ପାଶ । ୨୨ ।
କର-କମର୍ଦ୍ଦିତା          ଅର୍ଦ୍ଧ ଜର୍ଜ୍ଜରିତା
ସ୍ଥଳ ଗୋଷ୍ପଦ କତୀ
ଶୋଭା ନକେଇନ          ନ ପାଇ ଯତନ
ଯାଉଛୁ କି ଅହା ସଢ଼ି ? । ୨୩ ।
ଅହା ହନ୍ ହନ୍          ଯତନ ବିହୀନ୍
ଅର୍କକ୍ଷେତ୍ରେ ଯାଜପୁରେ
ଭାରତେ ପବିତ୍ର          ଜଗନ୍ନାଥ କ୍ଷେତ୍ର
ଅଥବା ଭୁବନେଶ୍ୱରେ । ୨୪ ।
କେତେ ମନୋଲୋଭା          କାରୁକାର୍ଯ୍ୟଶୋଭା
ହେଉଛି ରେ ଧ୍ୱଂସସାର
ଦେଖିଲେ ବଚନ          ନ ଫୁଟେ ନୟନ
ଝୁରେ ଅଶ୍ରୁ ଅନିବାର । ୨୫ ।
ଶୈବାଳାବୃତ,          କାହିଁ ସ୍ଥାନ ଚ୍ୟୁତ
ମୂର୍ତ୍ତି କେତେ ମନୋହର
ଦୁଃଖ ବିମୋଚନ          ପାଇଁ କି ବଚନ
ଭାଷିବାକୁ ତତପର ? । ୨୬ ।
କାହାର ଅନ୍ତର          କାହାର ବା କର
ପଡ଼ିବାରୁ ଅହା ଖସି

ନାହିଁକା ଶ୍ରବଣ ଦେବାରୁ ଛେଦନ
କାନ୍ଦୁଛୁ କି ଦୁଃଖେ ବସି ? ।୨୭।
କେତେ ବା ସ୍ୱେଦନ ଜାଣି ଅକାରଣ
ହେଲେଣି ନୟନହୀନ
ଧରଣୀ ଶୟନ କଲେଣି ବରଣ
କେତେ ବା ନ ସରୁଁ ଦିନ ।୨୮।
କାହାର ବା ଶିର ଦଗ୍ଧ ଶରୀର
ଛିଟେ ଖସି ଖସି ଭାଙ୍ଗେ
ପାଷାଣେ ନିର୍ମିତ ତଥାପି ଚର୍ବିତ
ହେଲୁଁ ତ ଦେଖ କାଳଗ୍ରାସେ ।୨୯।
ଅଭିମାନ କର ମନ୍ ଦୂର କର
ଆମ୍ ଏହି ଦଶା ଧାଇଁ
ରୂପ ଯଉବନ ନୁହେଁ କଦାଚନ
ପାଷାଣୁଁ ଅଧିକ ସ୍ଥାୟୀ । ୩୦ ।
ଧନ୍ୟ ସେ ଧନାଣୀ ନାହାନ୍ତି ସେ ଅଛି
ଶିଳାରେ ଜୀବନ୍ତ ଠାଣି
ଅତି ମନୋରମ କାର୍ଯ୍ୟ ଅନୁପମ
ବର୍ଣ୍ଣିପାରେ ବୀଣାପାଣି ।୩୧।
କାହିଁ ଦପ ଦପ କାହିଁ ବା ଦରପ
ପ୍ରତ୍ୟକ୍ଷ ନରୁ ନାରୀ ।
କାହିଁ ଦର କରି ନାନା ଭଙ୍ଗେ ଧରୁ
ଜନମନ ମୁଗ୍ଧକାରୀ ୩୨ ।

କାହିଁ ମତ୍ତ ମୂର୍ତ୍ତି ଦେଖାଉଛନ୍ତି ସ୍ଫୂର୍ତ୍ତି
ଯେସନେ ଦେବସେନା-ପତି ।
କାହିଁ ଧନୁର୍ଦ୍ଧର ନିକ୍ଷେପୁଛନ୍ତି ଶର
ଅବହେଳେ ଅରି ପ୍ରତି । ୩୩ ।
କାହିଁ ବିକଶିତ ସୁମନମଣ୍ଡିତ
ଗୁଳ୍ମ ତରୁ ଲତାପୁଞ୍ଜ
କାହିଁ ବିମ୍ବାଧରୀ ବୀଣା କରେ ଧରି
ମଣ୍ଡେ ମନୋହର କୁଞ୍ଜ । ୩୪ ।
ମେଘ ଆଗମନ ଦେଖି ମୟୂରୀଗଣ
ନାଚିବାକୁ ଅଭିଳାଷୀ
ଘେନି କରେ ବୀଣା ବାଦନ ପ୍ରବୀଣା
ବନକନ୍ୟା ମଦାଳସୀ । ୩୫ ।
ଶିଳା ବିନିର୍ମିତ ନ ଦେଖଇ ଚିତ୍ତ
ଆହା କି ଅପୂର୍ବ ଶିଳ୍ପ
ନିଜକୁ ପାଷାଣ ବୋଲି ହୁଏ ଜ୍ଞାନ
ମନ୍ତ୍ର-ମୁଗ୍ଧ ହେଲା ପରି । ୩୬ ।
ଅହା କି ମଞ୍ଜୁଳ ନାସା ଢଳଢଳ
ମୁଖ ଅରବିନ୍ଦ ଶୋଭା
ଖଞ୍ଜନ ଗଞ୍ଜନ ବିଶାଳ ନୟନ
ଅହା କେଡ଼େ ମନୋଲୋଭା । ୩୭ ।
ଯେଉଁଠାରେ ଯେମନ୍ତ ଭଙ୍ଗିମା ତେମନ୍ତ
ଦିଶଇ ଜୀବ ସଦୃଶ

ଲବଣେ ପଚୁଲା ହେଲେ ହେବ ଭୁଲା
ଥିନ ଦେହ ନୁହେ ସତ୍ୟ । ୩୮ ।
ନ ଉଠାଉ ବାଣୀ କହୁଛୁ ତାହାଣି
ଉତ୍କଳର ପୂର୍ବ୍ବତନ ।
ଯେବେ ଏ ଦୁଃଖିନୀ ଭାରତନନ୍ଦନୀ
ଥିଲା ସୁଖ ନିକେତନ । ୩୯ ।
ପୁଲକିତ ମନେ ଉତ୍କଳ ନନ୍ଦନେ
ଘେନ ଜୟ-ବୈଜୟନ୍ତୀ
କରୁଥିଲେ ସଜ ଯେବେ ଅଶ୍ୱ, ଗଜ
ପଦାତିକ ପନ୍ତି ପନ୍ତି । ୪୦ ।
ମାତି ବୀରମଦେ ସର୍ବେ ମହାନନ୍ଦେ
ପିଟି ଯେବେ ଜୟ ଢଙ୍କା ।
ଭୂମି ଭେଦୀ ସ୍ୱନେ ଅରାତିର ମନେ
ଉପୁଜାଉଥିଲେ ଶଙ୍କା । ୪୧ ।
ଥିଲେ ବଡ଼ ଧାନ ଏକ ମନ ପ୍ରାଣ
ଜାତୀୟ ବଂଶୀୟ ସ୍ୱର
ଭୁଲି ଅନୁଷ୍ଠାନ ମାନ ଅପମାନ
ବାସ୍ତୁ ପୁତ୍ରନକା ପଥ । ୪୨ ।
ସ୍ୱଳତ ସକଳେ ଜାତୀୟ ମଙ୍ଗଳେ
ଅତି ପୁଲକିତ ମନେ
ଧାଉଁଥିଲେ ରଙ୍ଗେ ଯେସନ ପତଙ୍ଗେ
ଅଗ୍ନି ଶିଖା ଦରଶନେ । ୪୩ ।

ନିଦାଘ ତପନ     ବରଷା ପବନ
କରୁଥିଲେ ହେୟ ଜ୍ଞାନ
ଚିର ନବୀ ନର     ଲପନେ ତତ୍ପର
ରକ୍ଷିବାକୁ ଜାତି ତ୍ରାଣ । ୪୪ ।

ଉଦେଶ୍ୟ ସାଧନ     ଜମନ୍ତ୍ରେ ଜୀବନ
ଅକାତରେ ବିସର୍ଜନ
କରୁଥିଲେ ରଣେ.     ପୁଲକିତ ମନେ
ସ୍ୱର୍ଗ ସୁଖ ଉପାର୍ଜନ । ୪୫ ।

ଧନ୍ୟ ଅନୁପମ     ନୃପେନ୍ଦ୍ର ବିକ୍ରମ
ଯଯାତି କେଶରୀ ସଙ୍ଗେ
ଯେବେ ଭୋଷମନେ     ଅରି ନିର୍ଯ୍ୟାତନେ
ମାତିଥିଲେ ରଣରଙ୍ଗେ । ୪୬ ।

ଯେବେ କାଞ୍ଚିପୁରେ     ଦକ୍ଷିଣେ ସୁଦୂରେ
ତଟ ଗୋଦାବରୀ କୃଷ୍ଣା
ଜିଣି ଗଣପତି     ଚୈତ ବୈଜୟନ୍ତ
ନବାଉଲେ ଝମ୍ପ ତୃଷ୍ଣା । ୪୭ ।

ପୁରୁଷ ନରମ     ସେ ପୁରୁଷୋତ୍ତମ
ବିଷ୍ଣୁ ଚକ୍ର ଧନ୍ଦବର
କାଞ୍ଚିରାଜ ଗର୍ବ     ଦେଲେ କଲ ଖର୍ବ
ଯେବେ ବୀର ଧନୁର୍ଦ୍ଧର । ୪୮ ।

କାବେରୀ ତ୍ରିବେଣୀ     ସ୍ରୋତସ୍ୱତୀ ବେନି
ମଧ୍ୟେ ଯେନ ପଉବାଣ୍ଡ

ଯମଦୂତପରି　　　ଦବସ ସବଂସ୍ବ
ଯୋଦ୍ଧାମଣ୍ଡି଼ଥିଲେ ଦାଣ୍ଡ । ୪୯ ।

ଯେଉଁକାଳେ କଟକ-　　　ମାନଙ୍କ ଛଟକ
ଦେଖି ଜଗନ୍ନାସୀ ଗଣ
ଚକିତ ସ୍ତମ୍ଭିତ　　　କେତେ ବା ଶଙ୍କିତ
କେତେ ପୁଲକିତ ମନ । ୫୦ ।

ଅତି ପୁରାତନ　　　ବରଜା-ଭବନ
ମନୋହର ଉପବନେ
ଯେବେ ଯାଜପୁରେ　　　ଅଣିଚର୍ମ କରେ
ବୁଲୁଥିଲେ ବୀରଗଣେ । ୫୧ ।

ରୂପେ ଅନୁପମା　　　ଅତି ମନୋରମା
ଯେଉଁକାଳେ ଅମରାବତୀ
କୃଷ୍ଣାନଦୀ ତୀରେ　　　ମଣ୍ଡି଼ଥିଲେ ବୀରେ
ଶୌର୍ଯ୍ୟେ ଯେତେ ଲକ୍ଷପତି । ୫୨ ।

ଯେବେ ପାହାଡ଼ିଅ　　　ନଅର ଛତିଅ
କାରୁକାର୍ଯ୍ୟ ସୁଶୋଭିତା
ତ୍ରିଦିବ ସମ୍ପତ୍ତି　　　ଶଚୀ ଶଚୀପତି *
ଯେନ ଅତି ପୁଲକିତା । ୫୩ ।

ଯେବେ ଚତୁର୍ଦ୍ଦ୍ୱାର　　　ପ୍ରକାଣ୍ଡ ପ୍ରାକାର
ମହାନଦୀ ବାମତୀରେ
ସତତ ମଣ୍ଡିତ　　　ବର୍ମ୍ମଧରଭୂଷିତ
ଗ୍ରାମକଣ୍ଠେବର ତୀରେ । ୫୪ ।

* ଛତିଅରେ ବର୍ତ୍ତମାନ ଶ୍ରୀ ଏତ୍ର ଚତୁର୍ଣୀଙ୍କର ଉତ୍ ମନ୍ଦିର ବର୍ତ୍ତମାନ ଅଛି ।

ଯେବେ ବାରବାଟୀ    ଦୁର୍ଗ ପରିପାଟୀ
ଶୋଭାରାଣି ଦରଶନେ
ଅବାରିତ-ଗତ    ଚନ୍ଦ୍ରୋତ୍ପଳା ସଙ୍ଗ
ଅତି ପୁଲକିତ ମନେ । ୫୫ ।

ମନ୍ଥରଗାମିନୀ    କ୍ଷୋଭ ମୁକ୍ତାଦିନୀ
ଭଗ୍ନ ହେଉଥିଲା ଯେନ.
ଅର୍ଦ୍ଧଚନ୍ଦ୍ରାକାର    ନୂପୁର ଉଦାର
ପରସାର ବାନ୍ଧୁବେନ । ୫୬ ।
ଚନ୍ଦ୍ରବନ୍ଦ୍ର ଶୋଭା    ଦୁର୍ଗ ମନୋଲୋଭା
ଯେସନେ ହିମାଳୟ ଗିରି
ପିନ୍ଧି ଯଜ୍ଞସୂତ୍ର    ହିନ୍ଦୁ ବ୍ରହ୍ମପୁତ୍ର
ଜନମନ ମୁଗ୍ଧକାରୀ । ୫୭ ।
ଯେସନେ କେଶରୀ    ବୃନ୍ଦାବନ କରି
ପ୍ରୀତି ଭରି ଯୋଦ୍ଧାଗଣ
ଇନ୍ଦ୍ରଜିତ ପରି    ନାନାଅସ୍ତ୍ର ଧରି
କରୁଥିଲେ ବିଚରଣ । ୫୮ ।
ବିଳାସ ଭବନ    ରମ୍ୟ ଉପବନ
ମଣ୍ଡଳେ ନ ଦେଇ ମନ
ମନ୍ଦିର ଗଠନ    ତଡ଼ାଗ ଖନନ
କରୁଥିଲେ ରାଜଗଣ । ୫୯ ।
ଯେବେ ବନ୍ଦିଗଣେ    ଦେବା ଆଗମନେ
ଜୟରବପୂର୍ଣ୍ଣ ଗୀତ

ଗାଉ ସୁତାନରେ ବୀଣାଝଣିସ୍ୱରେ
କରୁଥିଲେ ଜାଗରଣ । ୬୦ ।
ଯେକାଳେ ବ୍ରାହ୍ମଣେ ଶାସନେ ଶାସନେ
ଯେତେ ପୋଷ୍ୟପୁତ୍ର ଗଣ ।
ଅଧ ସୁତମାନେ ବେଦ ଉଚ୍ଚାରଣେ
କାହିଁଥିଲେ ସ୍ୱଚ୍ଛନ୍ଦନ । ୬୦ ।
ଯେକାଳେ କଳାଣୀ ଦୃଢ଼ ଶିଳା ଖଣ୍ଡେ
ଅଭ୍ରଭେଦ ଚୂଡ଼ାଧାରୀ ।
ମନ୍ଦିର ନଗର ମଣ୍ଡନେ ଚତୁର
ଜନମନ ମୁଗ୍ଧକାରୀ । ୬୧ ।
ସ୍ୱପ୍ନେ " ବୀଣାପାଣି " ଏ ସବୁ କାହାଣୀ
କହୁ କହୁ ବାକ୍ୟ ହୀନ
ହେଲୁ ତୋ, ଉତ୍କଳ, ବଦନ ଉଜ୍ଜ୍ୱଳ
ହେଉ ନାହିଁ ଶୁଭଦିନ । ୬୨ ।
ବାମ୍ଭ ପିତୃଗଣେ ବିଶେଷ ଯତନେ
ରଖିଗଲେ ଯେଉଁ ଧନ ।
ସବୁ ଅକାରଣେ ଉତ୍କଳ ନନ୍ଦନ
କରନ୍ତାରୁ ଅଯତନ । ୬୩ ।
ସାତଚନ୍ଦ୍ର ମନେ ନନ୍ଦନ କାନନେ
ତାଙ୍କ ରମ୍ୟ ଉପବନ ।
ବିଳାସ ଭବନ କାଋବେ ଯତନ
କର ନାମ ସଙ୍କୀର୍ତ୍ତନ । ୬୪ ।

ନ ଦେଖନ୍ତି ଭ୍ରମ ଦଶା ଅସମ୍ଭବ
ଲଭିବେ ସେ ସବୁ ଦିନେ ।
ଯେଣୁ ଏହି ମାତ୍ର ସନ୍ତାନ ସମ୍ପଦ
ଯେ ଖୁଞ୍ଚନ୍ତି ବନେ ବନେ । ୭୫ ।
ମୃଗେନ୍ଦ୍ର ସନ୍ତାନ ଶୃଗାଳ ସମାନ
ଅହୋ କେଉଁ ଅଧୋଗତ ।
ନୋହିଲେ ସଦସ୍ୟ ବଧି ନରଦସ୍ୟୁ
ଦଣ୍ଡ ନାହିଁ ଅନ୍ୟଗତ । ୭୬ ।
ସହିଲେଣି ତପ ଜୀବନ ପ୍ରଦୀପ
ହୋଇଲାଣି ନିର୍ବାପିତ ।
ଦଶେ ଦଶବାର ଘୋର ଅନ୍ଧକାର
ଧ୍ରୁବ ତାରା ଅସ୍ତମିତ । ୭୭ ।
ଶୋକ ସିନ୍ଧୁମାରେ ନିରାଶା ଉର୍ମିରେ
ନ ପୂରଇ ଆଉ ବାଣୀ ।
କହୁ କହୁ ଦୁଃଖେ ଆହା ଅଧୋମୁଖେ
ପଡ଼ିଯାଏ "ବୀଣାପାଣି" । ୭୮ ।
ଅତୀତର ସାକ୍ଷୀ ଉଷେ ବିଶାଳାକ୍ଷି
ତପା ଏହା ଦରଶନେ ।
ଅତୀତ ଗୌରବ ଅତୀତ ବିଭବ
ପଡ଼ୁ ନାହିଁ କାହା ମନେ । ୭୯ ।
ବଦନ ଫେରାଇ କେହି ଦେଖୁ ନାହିଁ
କାଳଚକ୍ରପଥାଙ୍କିତ ।
,

ଉଜ୍ଜ୍ୱଳ ବରଣେ          ବିଶଦ ବଚନେ
ଉତ୍କଳର ଇତିବୃତ୍ତ । ୭୦ ।
ଏବେ ମ୍ରିୟମାଣ          ବଳବୀର୍ଯ୍ୟହୀନ
ସଦା ପରମୁଖାପେକ୍ଷୀ ।
ଉଦ୍ୟମ ରହିତ          ଧୂଳି ଧୂସରିତ
ଉତ୍କଳ-ନନ୍ଦନେ ଦେଖି । ୭୧ ।
କି ଭାଳନ୍ତି ମନେ          ଅମରଭବନେ
ଦିବ୍ୟସିଂହାସନେ ବସି
ଯଯାତି ବୀରେନ୍ଦ୍ର,          ନୃପ, ଲଲାଟେନ୍ଦ୍ର,
ମର୍କତ କେଶରୀ ବଶୀ । ୭୨ ।
କି କହେ ଚୋଡ଼ଗଙ୍ଗ          କି ଭାବେ ଅନଙ୍ଗ
ଭୀମଦେବ ନୃପମଣି
କେତେ ଶୋକ ତାପ          ଭୋଗର ପ୍ରତାପ
ଏ ଦୁଃଖ କାହାଣି ଶୁଣି ? । ୭୩ ।
କବି, ପୁରୋହିତ          ଚିତ୍ରକରଗାୟକ
ଉତ୍ସେ ଶୁଭ୍ରଚନ୍ଦ୍ରାନନେ ,
ପରମ ପବିତ୍ର          ସ୍ଥାପିଲେ ଯେ ଯେଉଁ
ନ ପଡ଼େ କି ତାଙ୍କ ମନେ ? । ୭୪ ।
ଯାତ୍ରୀଗଣ ଆସି          ତହିଁ ପାପରାଶି
ରଖି ଯାଉଁ କାଳେ କାଳେ
ଉତ୍କଳ ଗଗନ          ଘୋର ଧୂମାଚ୍ଛନ୍ନ
ହେଲାକି ସେ ପାପାନଳେ । ୭୫ ।

କବା ନବଗ୍ରନ୍ଥ          ସୁନ୍ଦର ଛନ୍ଦ
ଢୋଇବାରୁ ସ୍ଥାନଚ୍ୟୁତ
ଅନ୍ଧାର ଭୁବନେ,          ଉତ୍କଳ ନନ୍ଦନେ
ଗାଢ଼ ନିଦ୍ରା ଅଭିଭୂତ ? । ୭୬ ।
ତ୍ରିପାପନାଶିନି,          ଅଲୌକ ଦାୟିନି
ତୃଷେ ବିଶ୍ୱବିମୋହନ,
ବାରେ ଦୟା ବହି          ଦେଇ, ଦୟାମୟି
ଦେଇ ମନ୍ତ୍ର ସଞ୍ଜୀବନୀ । ୭୭ ।
କରି ଜାଗରିତ,          ନିଦ୍ରାବିମୋହିତ
ଉତ୍କଳ-ନନ୍ଦନଗଣେ
ଫିଟାଇ ନୟନ          କରନ୍ତୁ ଦର୍ଶନ
ସର୍ବେ ପୁଲକିତ ମନେ । ୭୮ ।
ଚେତିଲେଣି ମଥା          ଶୁଣି ତୃଷାକଥା
ଦୀର୍ଘନିଦ୍ରା ପରିହରି
ପ୍ରାଚୀନ ଦେଶର          ଉଠାନ୍ତି ସୁନାମ
ଗ୍ରୀସ ବଲଗାର୍ଯ୍ୟ ଧରି । ୭୯ ।
ଅଦ୍ୟାରୁ ବାନ୍ଧାଣ          ଧୂମକେତୁପରି
କେତେ କେତେ ନବଜାତ
କବିବୃନ୍ଦ ରଚିତ          ସ୍ତବକ ବିସ୍ତୃତ
ଦେଖାଇ ପ୍ରତିଭା କାନ୍ତି । ୮୦ ।
ପ୍ରକୃତିରୁ ଦାସୀ          କରଣେ ପ୍ରୟାସୀ
ଯନ୍ତ୍ରି ହେଉଛି ମହୋଦୟ

ବଣ କର ଜଳ        ବହ୍ନ୍ୟଠି ଅନଳ
କାଟି ଟେର ବାନ୍ଧ ନଦୀ । ୮୧ ।
ଫେଡ଼ିବାକୁ ଦଶା        କେବଳ ଭରସା
ବ୍ରିଟିସକେଶରୀ କର
ଯାହା କୃପାବଳେ        ହୋଇଲେଣି ହେଲେ
କେତେ ଜାତ ଅଗ୍ରସର । ୮୨ ।
ଦେଖିଲେଣି ଉତ୍ଥିତ        ତା ମଧ୍ୟେ ପାଳିତ
ଅଷ୍ଟ୍ରେଲିୟା ଅଫେରିକା
ବନ୍ୟପଶୁ ସ୍ଥାନ,        ଅସଭ୍ୟ ଜାପାନ
ନବଯୁବା ଅମେରିକା । ୮୩ ।
ଏହା ଦରଶନେ        ହେବ କାହାମନେ
ସାଧୁଭାବ ଜାଗରତ ?
ନୂତନ ପରତେ;        ଦେବ କି ହେ, ସତେ
ଦୁଃଖ ନଶୀ ବହୁରତ ? । ୮୪ ।
ନିଦ୍ରା ପରିହରି        ବଳବୀର୍ଯ୍ୟ ଧରି
ଉତ୍ସାହ-[illegible]
ମିଳିତ ମନେ        ପ୍ରଫୁଲ୍ଲ ବଦନେ
ପଶିବେ କି କାର୍ଯ୍ୟ କ୍ଷେତ୍ରେ । ୮୫ ।
ଅନ୍ଧାରେ ଯେସନ        ଉଷା ଆଗମନ
ଦରଶନେ ଚରାଚର;
ଉନ୍ନତ ମାର୍ଗରେ        ଅଶ୍ରାନ୍ତ ପଦରେ
ହୋଇବେ କି ଅଗ୍ରସର । ୮୬ ।

ତ୍ରିଦିବ କେଶରୀ ମାଘ ଅନୁସରି
ଅମ୍ବୋଧିରେ କରି ଯତ୍ନ
ଦେବେ ବଦ୍ଧେ ମନ ଯହିଁ ଉପାର୍ଜନ
ହୁଏ ନବନବ ରତ୍ନ । ୮୭ ।
ଲଗି ପ୍ରାଣପଣ ଯେବେ ସୁରଗଣ
କ୍ଷୀରସିନ୍ଧୁ ମନ୍ଥନରେ *
ହିବିମ୍ବ ଘୃଣେ ଲଭିବେ କି ପୁଣି
ଶୁଭ୍ର ଯଶ ଶଶଧରେ । ୮୮ ।
ପଶି ସେ ଦୁର୍ଗମ ବରୁଣଭୁବନ
ଯତନେ ପ୍ରସନ୍ନା କରି
କୋପେ ଲୁକ୍କାୟିତା ବାରିଧି ଦୁହିତା
ଆଣିବେ କି ବାଳେ ବର । ୮୯ ।
ଉଚ୍ଚୈଃଶ୍ରବାସମ ବାଜି ଅନୁପମ
ସୃଷ୍ଟେ କରି ଅନ୍ୱେଷଣ
ଐରାବତପରି ଯୁଥ ଯୁଥ କରି,
କରିବେ କି ହରଣ ? । ୯୦ ।
ଜମ୍ବୁ ପାରିଜାତ ମାଳା ଅବଦାତ
ଲମ୍ବାଇଣ ଗଳଦେଶେ
ଶଙ୍ଖ ବଜାଇ ଦର୍ପ ମଦଭରେ
ବୁଲିବେ କି ଦେଶେ ଦେଶେ । ୯୧ ।

---

* ସମୁଦ୍ର ମନ୍ଥନ [illegible] ଉଚ୍ଚୈଃଶ୍ରବା [illegible] ପ୍ରଭୃତି
ରତ୍ନ ଉତ୍ପନ୍ନ ହୋଇଥିଲା; [illegible] ସେହି ମାନ ଏହି [illegible] ॥

ଜାତୀୟ ଜୀବନ        ଅମୃତ ସେଚନ
କର ତେଜୋମୟ ତନୁ
ଦେବେ କ ସୁନ୍ଦର        ମହା ଧନୁର୍ଦ୍ଧର
ଯେସନ ଅବଣ୍ଡହୂନ୍ ? । ୧୨ ।
ଧର୍ମରେ ଏିଦବ        ଦୁର୍ଲ୍ଲଭ ବୈଭବ
ଭୋଗରେ ବଳାଇ ମତ
ଜାତୀୟ ଏକତା        ଜାତୀୟ ମମତା
ବୁଝିବେ କ ସଦଗତ । ୧୩ ।
ଦେବ ପ୍ରବାହିତ        କ ଉଷ୍ଣ ଶୋଣିତ
ଧମନୀରେ ଧମନୀରେ
ପୁରୁଷ ଉଚିତ        କାର୍ଯ୍ୟ ସମ୍ପାଦନ
କରିବେ କ ଅବନୀରେ ? । ୧୪ ।
କତ ସ୍ରୋତସ୍ୱତୀ        ଗଣ ରୁଦ୍ଧଗତ
ନଗଶିର ଅବନତ
ବନ୍ଧ୍ୟା ବୃକ୍ଷ ଫଳେ        ଅବନୀମଣ୍ଡଳେ
ଦେଖିବେ କ ସମ୍ଭ୍ରମତ । ୧୫ ।
ଏ ସକଳ ଆଶା        କେବଳ ଦୁରାଶା
ଆକାଶ କୁସୁମ ପରି
ଥିବ ମନେ ମନେ        ନ ଫଳିବ ଦିନେ
ସତ୍ୟ ନୋହିଲେ ଡର । ୧୬ ।
ଉତ୍କଳ ଦେବିଣି        ମାଗୁଛି ମେଲାଣି
ଉଷେ ବିଶ୍ୱବିମୋହିନୀ

ତବ ସ୍ୱଗଣେ ଦେଖି ଗନ୍ଧ ଘ୍ରାଣେ
ଚନ୍ଦ୍ରାତ୍ରେ ପ୍ରବାହିନୀ । ୧୭ ।

ସବୁ ଜାଣ ଦେବ କସ ନବେଦବ
ମୁହିଁ ମୂଢ଼ ଦୀନ ହୀନ
ପାହୁ ଦୁଃଖ ନଶା ଦୁଃଖିନୀ ଓଡ଼ଶା
ଦେଖ୍ ବାରେ ଶୁଷ୍କବଦନ । ୧୮ ।

ଦେବ ଦୟାସ୍ପି ବାରେ ଦୟା ବହୁ
ଏଥକୁ ଉପାଯ୍ କର.
ଏହୁ ନବେଦନ କରେ ଅଙ୍କନ
ବାରମ୍ବାର ଯୋଡ କର । ୧୯ ।

---

## ଅନ ମା ସୁମନକଢ଼ୀ ।

"O fairest flow'r no sooner blown but blasted."

*Milton.*

( ନାମକରଣ ହୋଇ ନ ଥିବା ମାତୃହୀନ ଶିଶୁ ·
ବଯ୍ୟୋଗୋପଲକ୍ଷେ ଲଖିତ )

---

ଅନାମା ସୁମନକଢ଼ୀ ନ ଫୁଟି ପଡ଼ିଲୁ ଝଡ଼ି
ଅକାଳ କୁସୁମ ପର ହେଲୁ ଅନ୍ତର୍ଦ୍ଧାନ
ଶୋଭା ହୀନ କର ହାଯ୍ ଜୀବନ—ଉଦ୍ୟାନ । ୧ ।

ବିମଳ ସରଳ ତନୁ ବହୁଥିଲୁ ଦନ ଦନ

ଦେଖି ହେଉଥିଲା କେତେ ସୁଖର ଉଦୟ
ଏବେ ଛୁଣ୍ଡାଇଲା କଳି କେଉଁ ସେ ନିର୍ଦ୍ଦୟ !! । ୨ ।

ଆଶା କରୁଥିଲି ଚିତ୍ତ    ହେଲେ କଳି ବିକଶିତ
ତାପିତ ଜୀବନ ତାରେ କରିବ ରଞ୍ଜନ
ହାୟରେ ସେ ଆଶା ଏବେ ନିଶାର ସ୍ୱପନ । ୩ ।

ହେବାର ଅନୁକ୍ଷଣେ    ସିଞ୍ଚୁଥିଲି ସଯତନେ
କରି ତାକୁ ସବୁ ଆଶା ଭରସାରି ସ୍ଥଳ
ତାହା' ପରେ ଏବେ ଆଉ ସିଞ୍ଚିବି ସେ ଜଳ ? । ୪ ।

ସୌରଭ ବିସ୍ତାର କରି    ଜଗତର ମନ ହରି
କରି ନାହିଁ କଳି ଏଥି କୀରତି ସ୍ଥାପନ
ଜଗତ ଯେ ତାହାପାଇଁ କରିବ ରୋଦନ । ୫ ।

ତାହିଁପାଇଁ ପଞ୍ଚମାସ    ଉଡ଼ାଇଲା ଧରାବାସ
କରି, କେଉଣେ ବୃନ୍ତଗଲା କଳି ଏଡ଼େତ୍ୱରା
ନୁହେଁ ସେ ରେ ଉପଯୁକ୍ତା ତାର ବସୁନ୍ଧରା ? । ୬ ।

ଯାଉଥିଲା ମାତା ଆଗେ    ଜବା ତାର ଅନୁରାଗେ
ଅନୁରକ୍ତା ହୋଇ ବୃନ୍ତ ଗଲା ତାର ପାଶ
ଜନକ ନୁହଇ କେହି କରଣ ପ୍ରକାଶ । ୭ ।

ତରିବାକୁ ପରିଶ୍ରର    ପୁରାତନ ସୁଧୀଗୀର
" ଜନନୀ ଜନମଭୂମି ସ୍ୱର୍ଗୁ ଗରୀୟସୀ "
ସ୍ୱର୍ଗୀୟା ଜନନୀ ଅଙ୍କେ ହେଲା କି ପ୍ରୟାସୀ ? । ୮ ।

ଜଡ଼ କହି କହ ତାରେ    ଫେରଗୃହଁ ଅଭାଗାରେ
( ଜଡ ଆତ୍ମା ଯଦି ଶୁଣେ ମାନବ ବଚନ )

କହ ଏବେ କାହିଁ ତୁହି କରୁ ବିଚରଣ । ୯ ।
ମନୋରମ ନନ୍ଦନବନ          ଯହିଁ ବସେ ସୁରଗଣ
କଳ୍ପନା କଳ୍ପିତ ଅବା ନନ୍ଦନ କାନନ
ତ ଏସେ ହୋଇଛନ୍ତି ତୋର ବାନ୍ଧବଜନ ? । ୧୦ ।
ଅନ୍ତ ଗଗନ ଏଣି          ଚନ୍ଦ୍ର ଉପରେ ଥିଲୁ ପଡ଼ି
ଲମ୍ଫଦେବାପାଇ ଏଠି ମୃଗ ସୁଧାମୟ
ଫେରିଗଲୁ, କହ, ଦୂର ହେଉ ସେହି ଭୟ ? । ୧୧ ।
ଅବା ଅନ୍ୟ ଦେବ ଦେବ          ହୋଇଥିଲୁ ଅବତୀର୍ଣ୍ଣ
ନରରୂପେ ନରଲୋକେ କରିବୁ ପ୍ରୟାଣ
ଦେବଭାବ ? କାହିଁପାଇଁ ହେଲୁ ନିରୁଦ୍ଦେଶ ? । ୧୨ ।
ଲକ୍ଷ୍ମୀ ନ ବଳଲା ମତ          କରିବାକୁ ଅବସ୍ଥିତ
ବନ୍ଧୁଜନ ଛିଡ଼ ପରେ ? ତବଦରଶନେ
ଜନିଥାନ୍ତା ଦେବଭାବ ନରଗଣମନେ । ୧୩ ।
ଯିବାରୁ ତୋଠାରେ ଲକ୍ଷ୍ମୀ          ନିର୍ଦ୍ଦୟ ସ୍ୱପ୍ନଅକ୍ଷି
ନେଲା କରେ ରକ୍ଷିବାକୁ ନିଜ ଉପବନେ ?
ପରନ୍ତୁ କି କଷ୍ଟ ସେହି ବିଶ୍ୟାତ ଭୁବନେ । ୧୪ ।
ଶୁଣେନ୍ତି ସେ ଯମପୁର          ସ୍ଥାନ ଅତି ଭୟଙ୍କର
କେମନ୍ତେ ଧରିବ ତହିଁ କଳ୍ପୀ ସୁକମଳ
ଲବଣିରୁ ବଳ ତନୁ ଅତି ସୁକୋମଳ ? ୧୫
ପାପରେ ଦୂଷିତ ପ୍ରାଣ          ନିଏ ତୋର ନଳ୍ପାଣ
କାଳେ କାଳେ ଧର୍ମଶାସ୍ତ୍ରେ ହୋଇଛି କଥିତ
କହୀତ ହେବାର ନୁହେଁ ପାପେ କଳଙ୍କିତ ? । ୧୬ ।

ଥିଲ୍ଲ ସେହ ପାଉନାଭ      ଲୋଭ ହୋଇବାରୁ ଜାତ
ନଷ୍ଟେ ଅସେ କେହ୍ନ ଦେବ ନେଲ୍ଲ ଅବା ହର
କଏ ଏବେ ଅନ୍ଧ ମୋର ଶୁଣିବ ଗୁହାର ? । ୧୭ ।
ବାମ ହେଲେ ଦେବତାଏ,      ମାନବ ^ ବାମପାଏ
ସର୍ବଶକ୍ତିମାନ ଦେବେ ଶାସ୍ତ୍ରରେ କଥିତ
ଦେବତା ନିର୍ଦ୍ଦୟ ହେବା କେବେ କି ଉଚିତ ? । ୧୮ ।
ବଡ଼ ଯେଉଁ କାର୍ଯ୍ୟ କରେ ସବାଙ୍କେ ସୌନ୍ଦର୍ଯ୍ୟ ଧରେ
ରଙ୍କଲୋକ କଥା ତହୁଁ ଅତି ବଡ଼ମନା
ମନରେ ମାରିବା ଭଲ ମନର ବେଦନା । ୧୯ ।
ଯେବା ଯାଏ ଦେବପୁରେ,   ଫେର ସେ ନ ଗର୍ଭେ ଥରେ
ନ ଜାଣେ ସେ ସ୍ଥାନ କାହିଁ କେମନ୍ତ ସେ ଦେଶ
ନାହିଁ କହେ ସେ ଦେଶରେ ମମତାର କ୍ଲେଶ ?।୨୦।
ଈଶ୍ୱରଙ୍କ ଅଭିପ୍ରାୟ        ବୁଝିବା କଠିନ ଦାୟ
ଜଗତରେ ସବୁ ତାଙ୍କ ଇଚ୍ଛାର ଅଧୀନ
ଚକ୍ଷୁ ଥାଇଁ ଯନ୍ତ୍ରପ୍ରାଣୀ ନର ଚକ୍ଷୁହୀନ । ୨୧ ।
ଯାହା ନାମ ଦୟାମୟ       ହେଲେ ସେହ ନିରଦୟ
ଦୟାରୁ ନୁହଇ ସେହ କେବେହେଁ ବଞ୍ଚିତ
ନିଗୂଢ଼ ଉଦ୍ଦେଶ୍ୟ ତାଙ୍କ ନୁହେ ଅବଗତ । ୨୨ ।
ଏ ଯେଉଁ ଅନାଥା କଢ଼ୀ       ଗୁଲିଗଲା ଧରା ଛାଡ଼
ଥିଲା ତାଙ୍କ ଦୟା; ଯଦି ଜନ୍ମ ଭୂମି ପାଇଁ
ଇଚ୍ଛା ତବ ପୂର୍ଣ୍ଣ ହେଉ ଜଗତ ଗୋସାଇଁ ।୨୩।
ଅହେ ଦୟାମୟ ଦେବ,     ସତେ ଏପାପୀରୁ ନେବ

ଯହିଁ ଶୋଭେ ତବ-ପ୍ରେମ-ଅନନ୍ତ ଲହରୀ
ତୁମ୍ଭ ବିନା ଅନ୍ୟ କିଏ ପାପୀର କାଣ୍ଡାରୀ ? ।୬।

————

## ଭିକ୍ଟୋରିୟା ।

ଧନ୍ୟ ଭିକ୍ଟୋରିୟା ଭାରତଈଶ୍ୱରୀ !
ଧନ୍ୟ ଧନ୍ୟ ତୁମ୍ଭ ଶାସନ ଚାତୁରୀ ,
ଧନ୍ୟ ଧନ୍ୟ ତୁମ୍ଭ ଗୁଣର ମାଧୁରୀ !
ଶେଷ କେ କରିବ ବର୍ଣ୍ଣନା କରି ?
ପୁତ୍ରପରି ପ୍ରଜା ପାଳନ କରୁଛ ,
ମଙ୍ଗଳ ତାଙ୍କର ସଦା ମନାସୁଛ ,
ଉଦ୍ଭାବନ କେତେ ଉପାୟ କରୁଛ ,
ଧନ୍ୟ ଧନ୍ୟ ଧନ୍ୟ ଜନମ ତୁମ୍ଭର !
ସମର ସୋଦର କଣ୍ଟଅଳଗଣ ,
କରୁଛନ୍ତି ଦବାଗ୍ନ ବିତରଣ ,
କରିବାକୁ ରକ୍ଷା ପ୍ରଜା ଧନ ପ୍ରାଣ ,
ଧନ୍ୟ ଧନ୍ୟ ଧନ୍ୟ ଯତ୍ନ ତୁମ୍ଭର !
ବାଳ ବୃଦ୍ଧ ଯୁବା ଓ ଅବଳାଗଣ ,
ସବଳ ଦୁର୍ବଳ ସୁଖୀ ଦୁଃଖୀଜନ ,
ସ୍ୱଚ୍ଛନ୍ଦେ କରନ୍ତି ଜୀବନ ଯାପନ ,
ଧନ୍ୟ ଧନ୍ୟ ଧନ୍ୟ ରାଜତ୍ୱ ତୁମ୍ଭର !
ଦେଖେ ବରଜୂହ ଅପରୂପ ଶାନ୍ତି ,
ସବେ ହିଂସାଭାବ ମନୁଁ ଛାଡ଼ିଛନ୍ତି ,

ବାଘ ଛାଗ ପାଣି ଏକାଠି ପିଅନ୍ତି ,
ଧନ୍ୟ ଧନ୍ୟ ଧନ୍ୟ ପ୍ରତାପ ଭୂମିର !
　ପଥଶ୍ରାନ୍ତ ଦୂର କରିବାର ପାଇଁ
ଲାଗିଅଛୁ ବୃକ୍ଷ ଧାଡ଼ି ଧାଡ଼ି ହୋଇ ,
ହରୁଛନ୍ତି ଶ୍ରମ ଆଶ୍ରମକୁ ଦେଇ ,
ଧନ୍ୟ ଧନ୍ୟ ଧନ୍ୟ ଉପାୟ ଭୂମିର !
　ବାଷ୍ପୀୟ ଶକଟ ଅତି ଚମତ୍କାର ,
କମିଛେ ଭ୍ରମଣ ପଥ ଦନକର ,
ପବନଙ୍କୁ ଗତି ତାର ସଂଖରତର ,
ଧନ୍ୟ ଧନ୍ୟ ଧନ୍ୟ ଶିଳପ ଭୂମି !
　ପୁଣି ସର୍ବବେଳେ ବନ୍ଧ୍ୟଗିରିବର ,
ଲଳ ଅନମିତ ବକ୍ଷକୁ ଭୂମିର
ଯତ୍ନେ ଧରିଅଛି ହୋଇ ନତଶିର ,
ଧନ୍ୟ ଧନ୍ୟ ଧନ୍ୟ ବିକ୍ରମ ଭୂମିର !
　ଶୋଣ ପଦ୍ମା ନଦ ନଦୀ ଭାଗୀରଥୀ ,
ଧରୁଛନ୍ତି ସେତୁ ବିସ୍ତାରଣ ଅତି ,
ଯହିଁ ଅବହେଳେ ଗମୁଅଛି ହାତୀ ,
ଧନ୍ୟ ଧନ୍ୟ ଧନ୍ୟ ଅଦେଖା ଭୂମିର !
　ସ୍ରୋତସ୍ୱତୀ କେତେ ହୋଇ ଭୂବଗତ ,
ଉଚ୍ଚସ୍ଥାନେ ଜଳ ଯୋଗାଉଅଛନ୍ତି ,
ଅସ୍ଥା ନାହିଁ ତେଣୁ ବୃଷ୍ଟିଜଳ ପ୍ରତି ,
ଧନ୍ୟ ଧନ୍ୟ ଧନ୍ୟ କୌଶଳ ଭୂମିର !

ଯେଉଁ ସ୍ଥାନ ଅଟେ ନାବ୍ୟ ନଦୀସ୍ଥାନ ,
କଟାଉଣଅଛି ତହିଁ ଖାଲମାନ ,
ଯହିଁ ଗଳୁଅଛି ଅରଣବଯାନ ,
ଧନ୍ୟ ଧନ୍ୟ ଧନ୍ୟ ଉଦ୍ୟମ ଭୂମିର !

ସ୍ୱଦେଶୀୟ ଦ୍ରବ୍ୟ ଘେଣି ଦ୍ୱାରେ ଦ୍ୱାରେ ,
ବିକା ହେଉଅଛି ସ୍ୱଳ୍ପମୂଲ୍ୟରେ ,
ଲୋକେ କିଣୁଛନ୍ତି ଆନନ୍ଦ ମନରେ ,
ଧନ୍ୟ ଧନ୍ୟ ଧନ୍ୟ ଉପାୟ ଭୂମିର !

ସ୍ୱଦେଶରେ ଯାହା ହୋଇଅଛି ଜାତ ,
ବିଦେଶେ ପ୍ରେରିତ ହେଉଛି ତ୍ୱରିତ ,
ଘେଣି ମୁଦ୍ରାଗଣ ଦେଶରେ ବର୍ଦ୍ଧିତ ,
ଧନ୍ୟ ଧନ୍ୟ ଧନ୍ୟ ବାଣିଜ୍ୟଭୂମିର !

ଯେଉଁ ଠାରେ ହୁଏ ଦୁର୍ଭିକ୍ଷ ପତନ ,
ନାନାସ୍ଥାନୁ ଆଣି ଖାଦ୍ୟଦ୍ରବ୍ୟମାନ ,
ଯୋଗାଉଣ ଅଛି ସେଠାରେ ବହନ ,
ଧନ୍ୟ ଧନ୍ୟ ଧନ୍ୟ ଉଦ୍ୟୋଗ ଭୂମିର !

ପ୍ରିୟଜନ ହେବେ ଯାଉଛି ବିଦେଶ ,
ବାହକ ସକଳ ଘେନି ତା ସନ୍ଦେଶ ,
ଧାଇଁଛନ୍ତି ସଦା ନ ମାରି ନିଶ୍ୱାସ ,
ଧନ୍ୟ ଧନ୍ୟ ଧନ୍ୟ ନିୟମ ଭୂମିର !

ଦୂରଦେଶୁଁ ବାର୍ତ୍ତା ତାଡିତବଳରେ ,
ଆସୁଅଛି ପୁଣି ପଲକ ଭିତରେ ,

ପଢ଼ୁଛନ୍ତି ଲୋକେ ବହୁଧା ଚତ୍ୱରେ ,
ଧନ୍ୟ ଧନ୍ୟ ଧନ୍ୟ ବଙ୍ଗାଳ ଭୂମିର !
ଅଭ୍ୟୁଦୟରେ ସଦା ଏ ଜଣାଣ ,
କରନ୍ତୁ ଦୀର୍ଘାୟୁ ଦେବ ଜନାର୍ଦ୍ଦନ ,
କର ଏହିପରି ପ୍ରଜାଙ୍କୁ ପାଳନ ,
ମହତ ହୃଦୟା ଭାରତଈଶ୍ୱରୀ !

---

## କାର୍ତ୍ତିକ ସ୍ନାନ ।

ରାଗ ବଙ୍ଗଳାଶ୍ରୀ ।

ପୁଣ୍ୟମାସ ଖ୍ୟାତ    କାର୍ତ୍ତିକ ହେମନ୍ତ
ହେଉଁ ଉପନୀତ ଅଛି ।
ରବିତେଜ କ୍ଷୀଣ    କ୍ଷୀଣ ହେଲା ଦିନ
ଦୀର୍ଘ ହେଲା ଏବା ନିଶୀ । ୧ ।
ମନ୍ଦ ମନ୍ଦ ଶୀତ    ବାତ ପ୍ରବାହିତ
ଉତ୍ତରଦିଗୁଁ ହୋଇଲା ।
ନିଶାରେ ପ୍ରଚୁର    ବରଷେ ଶିଶିର
ଶୀତାଗମ ଜଣାଇଲା । ୨ ।
ରଜନୀ ଶେଷରେ    ଦୁଲଣୀ ଶେଜରେ
ରସାଇଲା ଜଳ ଛତ୍ର ।
ଏମନ୍ତ ଯାମିନୀ    ଯୋଗରେ କାମିନୀ
ଅତି ସୁଖେ ନିଦ୍ରନ୍ତି । ୩ ।

ଧନଞ୍ଜୟ ସଙ୍ଗେ ଜୀବଭୁଲ ଏବେ
ସୁଭଦ୍ରା ନସ୍ତଙ୍କା ମଣ୍ଡା ।
ଏକା ନଣାଡରେ ବୃନ୍ଦ ପୁଞ୍ଜରେ
ମୁଖେ ଶବ୍ଦ ରବ ନାହିଁ । ୪ ।
କେବଳ ପ୍ରହରୀ ସାବଧାନ କରେ
କୁହାଟଇ ହଇ ହଇ ।
ଅରକ୍ଷିତ ସ୍ଥାନ ଶୋଉଁ ଶୋଉଁ ସ୍ୱନ
କରୁଅଛନ୍ତି ରହି ରହି । ୫ ।
ସୁଧାକର ସୁଧା ପିଇ ସେ ବସୁଧା
ହୋଇଛନ୍ତି ଚେତନା ହତ ।
ରଡିବାକୁ ଗ୍ରପ କରୁ ସେ ମାନସ
ମାୟା କରିଲ ଜଗନ୍ନାଥ । ୬ ।
କୁମୁଦନୀ ସରେ ତାରକା ନଭରେ
ଖେଳେ ଯେସନେ ଗୋପାଙ୍ଗନା ।
ସରେ ପୁଣି ନଭେ ଶୁଭ୍ର ଶଶୀ ଶୋଭେ
କୁଞ୍ଜେ କୁଞ୍ଜେ ନଟ କହ୍ନା । ୭ ।
ବାତଚଞ୍ଚଳିତା ଉର୍ମି ଚଞ୍ଚଳିତା
କୁମୁଦିନୀ ଉଡସ୍ତଞ୍ଚ ।
ଦୋଳଅଣି ଦଳେ ହୃଦୟ କମଳେ
ଯଉବାକୁ ପ୍ରାଣନାଥ । ୮ ।
ନନ୍ଦସୁତ ପରି ଜ ଦଥଇ ଧସ୍ତ
ଶଣୀ ବସ୍ତ ପାଶେ ଥାଇ ।

ଦୋଳ ଜଳ ସଙ୍ଗେ　　ଖେଳୁଥିଲୁ ରଙ୍ଗେ
ସୋହାଗିନୀ ମନ ମୋହି । ୯ ।
ମାୟାରେ ବନ୍ଧନା　　ପ୍ରେମରେ ଅଧୀନ
ସ୍ଥିର ନୁହେ କ୍ଷଣେ ଧନୀ ।
ହୃଦୟ ରତନ　　ହୃଦରେ ଧାରଣ
ହେଉ ନାହିଁ ମନେ ଗୁଣି । ୧୦ ।
ଏଡ଼େ ପାଗଳିନୀ　　ଦେଖି ସପତ୍ନୀ
ଭାବ ନବେ ହୃଦେ ହସେ ।
ଯେଣୁ ନିଶାନାଥ　　ଧର ଭାବନାଥ
ନାମ ଭଜେ ଛାୟା ପାଶେ । ୧୧ ।
କୁମୁଦିନୀ ସମ　　ନିଜର ବିଭ୍ରମ
ନ ଦେଖେ ତାରକାବାଳୀ ।
ଚୌଦିଗେ ବେଷ୍ଟିତ　　ଥାଇଁ ଅଲକ୍ଷିତ
ଭାବେ ଶଶୀ ଯାଏ ଚଳି । ୧୨ ।
ଏହୁପରି ଚନ୍ଦ୍ର　　ହୋଇ କୃଷ୍ଣଚନ୍ଦ୍ର
ରଚେ ରାସ·ନୃତ କେଳି ।
ଶ୍ୟାମପ୍ରେମର　　ଲୀଳା ମନୋହର
ଦେଖି ମନ୍ଦାଭୋଗ ଖେଦ । ୧୩ ।
ଧନ୍ୟ ସୁଧାକର　　ପ୍ରେମ ସୁଧାକର
ସୁଧାକର ତବ ପୁଣି ।
ଦେଖି ଶତ୍ରୁ ମୁଖ　　କି ତୁଲେ କେ ଦୁଃଖ
ସଂଖ୍ୟାଣ୍ଡିବେ ଯାଏ ଭୂମି ? । ୧୪ ।

ପ୍ରେମର ଅଦର୍ଶ    ରୂପ କର ଏଣ
ଗଢ଼ିଛୁ ସୁଢ଼ଳ ତନୁ ।
ଶୁଣି ଚନ୍ଦ୍ର ନାମ    ନ ଉଠେ କାମ୍ୟାମ
ପ୍ରେମ ଉର୍ଦ୍ଧ କାହାମନ୍ତୁ ? । ୧୫ ।
ପ୍ରେମର ଝୁଲା    ଫୁଟ ପ୍ରେମଲୀଳା
ସହ ତାସ୍ତ ବୃନ୍ଦାବନୀ ।
ସାଉ, ତାଙ୍କ ସଙ୍ଗେ    ଧୀରେ ଧୀରେ ରଙ୍ଗେ
ଅଗ୍ରେ ଦଗବାରୁଣୀ । ୧୬ ।
ପ୍ରାଚୀ କକୁଭରେ    ସୁନ୍ଦର ବେଶରେ
ଶୁକ୍ର ତାସ୍ତ ଧର ଭାଲେ ।
ଅଛ ମନୋହର    ଚନ୍ଦ୍ର ସିନ୍ଦୂରର
ଊଷା ଦେବୀ ଉଭା ହେଲେ । ୧୭ ।
ଯେସନେ ତଗସ୍ତ    କହେ ଶୁକ୍ର ତାସ୍ତ
ଅର୍ଦ୍ଧେ ଜଗଦ୍‌ବାହିଗଣ ।
ଉଠ ବେଗ ହିତ    ନ କର ହେ ମଠ
ଦିନନାଥ ଆଗମନ । ୧୮ ।
ହେଲାଣି ନିକଟ    ଅରୁଣ ପ୍ରକଟ,
ପୂର୍ବଦିଗ ଶୃଙ୍ଗେ ଦେଖ ।
ସ୍ନେହରେ ରଞ୍ଜିତ    ଏବେ ଜଗନ୍ନାଥ
ଦେବେଣି ମଙ୍ଗଳ ଧର୍ଷ । ୧୯ ।
ଭୁନ୍ଦବନୀ ଧନୀ    ହୃତ ହେଲାଣି
ଭବତୋ କମଳନୀ ।

ମନ୍ଦ ଗନ୍ଧବହ ସୁମନଙ୍କ ସହ
ପ୍ରେମଲୀଳା ରଚନ୍ତିଣେ । ୧୦ ।
ବାତ ବକ୍ଷୋଜା ନବଜାକ୍ରିତା
ଦେଉଛୁ ବେଗେ ଘଞ୍ଚଡ଼ି ।
ପ୍ରେମର ଲୋଲୁପ ନଳିନ୍ତ ମଧୁପ
ଯାଉ ନାହିଁ ତାକୁ ଛାଡ଼ି । ୧୦ ।
ପ୍ରେମ ମଧୁ ଅଶେଷ ବୃନ୍ଦେ ଚନ୍ଦ୍ରଧାମେ
ଗୁଣ ଗୁଣି ଗୁଣସ୍ୱରେ ।
ହେଉ ଭୃଙ୍ଗୀର ମୋହନ ମନ୍ତ୍ର
ମାନିନୀ ଦମ୍ଭ ଭଙ୍ଗରେ । ୧୧ ।
ପ୍ରଦୀପ ମଣ୍ଡନ ଥାନସ୍ଥାନୁ ସ୍ଥାନ
ହାର ପୃଣୀତଳ ଦେଖି ।
ଜାଗିଲେ କାମିନୀ ଗଲାଣି ଯାମିନୀ
ଉଠିଲେ ଶଯ୍ୟା ଉପେକ୍ଷି । ୧୨ ।
ସ୍ନାନକୁ ବାହାର ହେବାକୁ ତତ୍ପର
ପୁରେ ପୁରେ ନାରୀଗଣ ।
ବାଳୁକା ପୂଜାର ଯେତେକ ସମ୍ଭାର
ଯତ୍ନେ କରୁ ଆୟୋଜନ । ୧୪ ।
ଅଗର ଚନ୍ଦନ ସିନ୍ଦୂର ସୁମନ
ଦୁର୍ବା ଘୃତ ଦୀପ ଧାନ୍ୟ ।
ଅତପ ତଣ୍ଡୁଳ ଇକ୍ଷୁ ନାଉବେଳ
ରମ୍ଭାଅଦ ଦ୍ରବ୍ୟମାନ । ୧୫ ।

ଦିବ୍ୟ ଶୃଙ୍ଗାରରେ  ଅତି ଯତନରେ
ଦେବ ପୂଜାପାଇଁ ଭରୁ ।
ଦମ୍ପତ୍ରୀ ଚଳିଲ  ଦେହ ଦୁଲୁଲ
ଯେନ ବାହାରିଲେ ନାରୀ । ୧୬ ।

ଗୋଟି ଗୋଟି ପୁରୁ  ବାହାର ହିଁମୋରୁ
ଦିଶୁଛନ୍ତି ତୋଷ ମନେ ।
ସୁନୀଳ ଆକାଶେ  ତାରକା ପ୍ରକାଶେ
ଯେସନେ ନଷ୍ଟ ଅଗମନେ । ୧୭ ।

କେ କହେ ସଙ୍ଗାତ  ପକାଇ ଘପଚ
କହୁଅଛୁ ଡାକିବାକୁ ।
କେ କହେ ସଖିଏ  ରହଗୋ ଟିକିଏ
ଫୁଲଥଣେ ଥୁବଡ଼ାଇଲୁ । ୧୮ [illegible]

କେ ଡାକେ ପାର୍ବତୀ  ମୋହନୀ ରେବତୀ
ହୀର ହସ୍ତୀ ପାସ୍ତୀ ସାସ୍ତୀ ।
କଞ୍ଚିଲ ଅଶୋକା  ଦ୍ରୋଣ ଧକାଦକା
ଚଳିଲେ ଅନେକ ନାରୀ । ୧୯ ।

ଶିଶୁ ଚନ୍ଦ୍ରାନନା  ମନ୍ଦଗଜଗମନା
ଚଳୁଛନ୍ତି ଯୂଥେ ଯୂଥେ
ହୃଷ୍ଟମାନ ମୂଳ  ମାଳ ଓ ମହୁଲ
ଝୁଲୁଛନ୍ତି ମନ ବାଟେ । ୩୦ ।

କଟିରେ କଙ୍କିଣୀ  ବାଜେ ରଣେ ରଣେ
ପାଦରେ ନୂପୁର ସ୍ୱନ ।

ନବା ଶୀଳମୂଖେ      ମହା ମନ ସୁଖେ
କରନ୍ତୁ ମତ୍ରେ ସ୍ନାନ । ୩୧ ।
ଅବଳାର ମନ      ରମ୍ୟ ଉପବନ
ଯତ୍ନେ ଦେଲେ ପ୍ରରଷେତ ।
ନଭୁଁବା ବଢ଼ଇ      ଯାନବଡ଼ ତହିଁ
ନୀଚ ଗୁଳ୍ମ ଅଗଣିତ । ୩୨ ।
ଏ ଅଟେ ତାଙ୍କର      କୁଳର ବେଭାର
ଦୁଇ ଗୃହ ଏକତ୍ରିତ ।
ହୋଇଲେ ଅଶନ      ବସନ ଭୂଷଣ
କଥାରେ ବଳାନ୍ତ୍ର ଚତ୍ । ୩୩ ।
ନଣନ୍ଦ ଦୁର୍ଗୁଣ      ସ୍ୱାମୀଆଚରଣ
ବୋହୂ ଭଲ ମନ ଯଣ ।
ଲଜ୍ଜନ ପ୍ରଣାଳୀ      ପଡ଼ିଶାଙ୍କ କଳ
ଛାଡ଼ି ନ ଲୋଡ଼ନ୍ତି ଆନ । ୩୪ ।
ଗୃଲୁ ଗୃଲୁ ବୁଢ଼ୀ      କହେ କଳହୁଡ଼ୀ
ବଡ଼ ଯାନବୋହୂ ମୋର ।
ଭୂଷି ଦଣ୍ଡ ନାହିଁ      କେମନ୍ତେ ମୁଁ ନେବ
ତାହାକୁ ଗୃହନ୍ତ ଦଣ୍ଡ । ୩୫ ।
ଶୁଣି ଅନ୍ୟ ବୃଦ୍ଧା,      କହେ ହୋଇ କ୍ରୁଦ୍ଧା
ତୋ ଦୁଃଖୁଁ ମୋ ଦୁଃଖ ବଳେ ।
ଏକଇ ଭ୍ରମର      ଦେଖି ଭୁଲାଙ୍ଗର
ପୋଡ଼ି ମରେ ଚନ୍ଦ୍ରାନଳେ । ୩୬ ।

## କାର୍ତ୍ତିକ ସ୍ନାନ ।

କେ କହେ ଲୋ ମିତ        ମୋର ପ୍ରାଣନାଥ
ଫାଲ୍‌ଗୁଣେ ନଥିଲେ ଘରେ ।
ଉପାସ୍ୟ ଦେବତା        କହେ "ଡାକ-ପାଣି"
କରି ଗୁଣୀ ଅଣି ଖରେ । ୩୭ ।
ନିଅ ଭୂଅଣ୍ଡୁଃୀ,        ସଙ୍ଗାତକୁ ଡାକି
କ କହିଲା କାନେ' କାନେ ।
ବୋଧିଲା ସଙ୍ଗାତ        ସ୍ୱୈରବର ତତ୍ତ୍ୱ
କଥା ରହିଲା ମୋ ମନେ । ୩୮ ।
କେଉଁ ଷଣ୍ଢୀମୂଖୀ        ହୋଇ ଅତି ଦୁଃଖୀ
କହେ କଲ୍‌ଯେତେ ଅନ ।
ସବୁ ବୃଥା ହେଲା        ଦଶହସ୍ତ ଗଲା
ନ ପାଇଲି ଚନ୍ଦାମାଳି । ୩୯ ।
ଦନାକେତେ ଠାଇ        ବାପଘର ଯାଇ
ନାକ ବାଲ ଧର୍ମିଲବ ।
ହସେ ପ୍ରାଣସହ        କହେ ଅନ ଯାଇ
ଶାଶୁ ଅଗେ କହୁ ଦେବ ।୪୦।
କହେ କେଉଁ ବାଳୀ        ବନ୍ୟାଳ କବଳୀ
ନ ମିଳେ ବୈଧବ୍ୟ ପାଇଁ ।
କହେ କେଉଁ ଗୋପୀ        ସେ ସେଃଚକାରୁଣୀ
ବ୍ରତେ ତାର ପୁଣ୍ୟ କାହିଁ ? ।୪୧।
ଏହପରି ଭାବି        କେତେ ମଦାଳସା
ଗୃହୁଛନ୍ତି ସ୍ୱପ୍ନେ ରଙ୍ଗେ ।

ଯେବେ ଏ ଉଚ୍ଚର    ନାଦ ସ୍ୱରନ୍ତର
ମିଳିବାକୁ ନଦୀସଙ୍ଗେ । ୪୨ ।
କଥା ନହସରେ    ନଦୀ ବେନ ତୀରେ
ପରବେଶୁଁ ଯାଇଁ ବାଳୀ ।
କି ମହୀମହିଳା    କଣ୍ଠେ ବିରାଜିଲା
ପୁଲ୍ଲ-ଗୁଚ୍ଛସରମାଳ ? । ୪୩ ।
ମରଦନ ଯାଇ    ଗଙ୍ଗା ନାମ ହୁଇ
ବଜେ ଦ୍ୱେଉ ନାଶ ଜଳେ ।
ଘନ ଦରଶନ    ଦ୍ୱେଉଁ କି ସ୍ୱପନ
ଚପଳା ସ୍ୱରଭେ ଖେଳେ ।୪୪।
ବସ୍ତ୍ର ପରିମାଣ    ଜଳେ ବାଳାଗଣ
ଅହୋ କେତେ ମନ ଲୋଭା ।
ଦେଖିଲେ ନୟନ    ପଲକ ବନ୍ଧାନ
କର ନ ପାରେ ଏ ଶୋଭା । ୪୫।
ନେତ୍ର ଇନ୍ଦିବର    ବନ୍ଧୁଳୀ ଅଧର
ନାସା ଗୃଧ୍ରୁ ତିଳଫୁଲ ।
ଦନ୍ତ କୁନ୍ଦକଢ଼ି    ଯତନେ ସଜାଡ଼ି
କମଳେ କର କେଁ ତୁଳ । ୪୬ ।
ଭସାଇନ୍ତି ନୀରେ    ଅଡ଼ ଯତନରେ
ଅହୋ କେତେ ମନୋହର ? ।
ଦନନାଥ ଯାଇ    ଶୁନ୍ଦିଲ କି ମଧ୍ୟ
ଅପୂର୍ବ ସ୍ୱମନ୍ଦହାର ? । ୪୭ ।

## କାର୍ତ୍ତିକ ସ୍ନାନ ।

ମକରନ୍ଦ ଅଶେ,    ମଦା ମନୋହାସେ
ଅଳିବୃନ୍ଦ ଅମ୍ବ ପାଶେ ।
ଛୋଲା ମଧୁକର    ଦେଖି ଭ ସଭ୍ରର
ଫେର ଯାନ୍ତି ଦ୍ୱନ୍ଦ୍ୱ ହ୍ରାସେ । ୪୮ ।
ନାଂପୂନର ଟିସ୍ତ    ଦର୍ଶନେ ସଫସ୍ତ
ଦୂରେ ଗଲେ ଅପସର ।
ବାହୁରୁ ମୃଣାଳ    ଢଗ୍ଧର ମସ୍ତଳ
ବୂଲନ୍ତ ଦେଇ ଉର୍ଜ୍ଜର । ୪୯ ।
ମନ୍ଧା ଚୋଷବରେ    ରଥାଙ୍ଗ ଚକୋରେ
ଯାନ୍ତି ଅସି ମୁଖ ପାଶେ ।
ଦେଖି କର୍ଣ୍ଣପାଶ    ଲଭି ଢବା ହ୍ରାସ
ପଳାଇଲେ ଦଶେ ଦଶେ । ୫୦ ।
ରୂଢ଼ାର୍ଦ୍ଧ ବଦନ    ଦଶଇ ଏସନ
ପୂର୍ଣ୍ଣ ଶଶୀ ଜଳଧରେ ।
ରୂଢ଼ନ୍ତି ଲମ୍ବରେ    ଧାଉନ୍ତି ପଛରେ
ଗ୍ରନ୍ଥ ଢବା ସ୍ନେହଭରେ । ୫୧ ।
ଢବା ଢମନାସ୍ତ    ଭୃଷ ଉତ୍ତ୍ରସରସ୍ତ
ଯମୁନାର ଗଙ୍ଗାର୍ଣ୍ଣରେ ।
ଉଠେ ମନୋଲ୍ଲେଭ    ପ୍ରସ୍ଫାଜନ ଶୋଭା
ବକାନ୍ତେ ଚଷ୍ଟମୀରେ । ୫୨ ।
ଜଳୁ ଉଠେ ଚୁଷା    ଦେବୀ ମନୋଲ୍ଲେଭା
ଶୋଭା ଜନ ମନ ହରେ ।

ମାର କରକର ବାମା କଳେବର
କେତକୀ ଯେପନେ ଭୂଷାରେଁ । ୫୩ ।
ଦଣ୍ଡକନ୍ଦ ବାଳା ଚନ୍ଦ୍ରଶୋଭିଳା
ଦ୍ରବ ବହୁବର୍ଣ୍ଣ ପତ୍ର ।
ଉଜ୍ଜ୍ୱଳ କାଞ୍ଚନ ନୂପୁର ସମାନ
ଆନ କେ ହୋଇବ ସର । ୫୪ ।
ସୁଲକ୍ଷଣମରୁ ଦେଖ ବନ ଗୁରୁ
ଅପରୂପ ଲତାଗଣେ ।
ଉଜ୍ଜ୍ୱଳ ତମାଳ— ଦଳ ଓ ଶ୍ୟାମଳ
ସୁମନ ଯେ ପଦ୍ମାନନେ । ୫୫ ।
ଚମ୍ପକ କଳିକା ଅଙ୍ଗୁଳୀରେ ଦେଖା
ବକ୍ଷେ ଫଳ ନାରିକେଳ ।
ଅତ କମନୀୟ କର କଣଳସ୍ଥ
ରମ୍ଭାତରୁ ଲତାମୂଳ । ୫୬ ।
ଗୋଟି ଗୋଟି ଲତା ଅଛନ୍ତି ଲଳିତା
ଦେଖି ଚିତ୍ତ ପୁଲକିତ ।
ରମଣୀପ୍ରୁ ତର କୃଷ୍ଣ ମନୋହର
ବନ୍ଧୁ ହେଉଁ ଏକତ୍ରିତ । ୫୭ ।
ପାଲଟି ବସନ ଧବଧ ବରନ
ଚରଣରେ ତୋଷମନେ ।
ବନ୍ଧିଗଲେ ବାଳା ହୋଇ ମେଳା ମେଳା
ବାଳ ମୂର୍ତ୍ତି ନଇମାଣେ । ୫୮ ।

ଦେଖି ନବଦୁର୍ଯ୍ୟ ହୋଇଲା ବକାଶ
ଯେନ୍ତୁ ଏସନ ଚିତ୍ର ।
ରଙ୍ଗ ନୀଳ ପୀତ ସୁମନ ମଣ୍ଡିତ
ସୁରତ ଓ ଅଗଣିତ । ୫୯ ।
ରଖିଦେଲା ଦେହ ଦେବପୂଜା ପାଇଁ
ସଯତନେ ସୁରଗଣେ ।
ଧର୍ମ କର୍ମ ପାଇଁ ହୋଇବାରୁ ଦାଇ
ଅଛ ବୃକ୍ଷ-ସୁବା ଜନେ ? । ୬୦ ।
ଥୋକେ ଥୋକେ ଦାଲି ଦିବ୍ୟ ଅର୍ଘ୍ୟସ୍ଥାଳୀ
ଯେସନ ଦେଲେ ଫୁଲଫଳ ।
ରକତ ଲବଙ୍ଗ ଦଶଦଳ ଇନ୍ଦ୍ରି
ଖେଳନ୍ତି ଜୁଳି ଉଜ୍ଜ୍ୱଳ । ୬୧ ।
ଅଗୁରୁ ଚନ୍ଦନ ସୁଗନ୍ଧ ପବନ
ଯେସନ କରା ଦୂରପଣେ ।
ଚଳେ ଧୀରେ ଧୀରେ ଦୁର୍ଗ ପୁରପୂରେ
ଖିବାକୁ ଜନାର୍ଦ୍ଦନେ । ୬୨ ।
ଅନନ୍ତ ଅବ୍ୟୟ ଦେବ ଦୟାମୟ
ଯହିଁ ରହି ବର୍ତ୍ତମାନ ।
ଯେମନ୍ତ ବଦନ ଦନ୍ତ ନିବେଦନ
ଭେଦ ନାହିଁ ବର୍ତ୍ତି ସ୍ଥାନ । ୬୩ ।
ପ୍ରହ୍ଲାଦ ତାକୁତ ଶ୍ରୀତେ ଧମ୍ପତ
ଧର ରୂପ ଦସ୍ତକର ।

ସ୍ୱମ୍ଭୁଁ ଥବିର୍ଭାବ    ହେଲେ ଦେବଦେବ
ବ୍ୟାପିଛନ୍ତି ଚରାଚର । ୬୪ ।
ଘନ ଡାକ ଶୁଣି    ବନ୍ଧୁ ଚନ୍ଦ୍ରାମଣି
ଚଟେ ନନ୍ଦ ବଜାଇଲେ ।
ଅଖଭର ଗତ    ଅଖିଳର ପତି
ଗୁଣ ବେ ଗାଇବ ଭଲେ । ୬୫ ।
ଯାହାଙ୍କୁ ଯେମନ୍ତ    ଦଶଇ ତେମନ୍ତ
ପୂଜୁଛନ୍ତି ଦଣ୍ଡପତି ।
ବାଳ୍ପ ବର ଠୂଳ    ଭକ୍ତି କର ମୂଳ
ପୂଜା କର କରଗଢ । ୬୬ ।
ପ୍ରସାଦ ଅଧର    ଚନ୍ଦନ ସିନ୍ଦୂର
ଭାଲେ ପେନ ଭୋଣମନେ ।
ବୃନ୍ଦେ ଚନଗଲେ    ଦେଖି ଚତ୍ ଭାଲେ
ଦନନାଥ ଅଗମନେ । ୬୭ ।
ଏବା ମୂର୍ତ୍ତିମନ୍ତ    ହୋଇ ଉଷା ସତୀ
ଶୁକତାର ଧର ହାତେ ।
ଅବିର୍ଭାବ ହୋଇ    ଜଗନ୍ମନ ମୋହି
ପଲକେ ଉଭାଇ ଗଲେ । ୬୮ ।
ଏତ କାର୍ତ୍ତିକରେ    ପ୍ରାତଃସ୍ନାନ ସରେ
ଏହମ୍ଭରେ ନଉ ନଦ ।
ସବଳା ଅବଳା    ହୋଇ ମେଳା ମେଳା
ପୂଜି ବ୍ରହ୍ମାଣ୍ଡର ପତି । ୬୯ ।

ମାସ ଅବଶେଷେ ପୂର୍ଣ୍ଣିମା ପ୍ରଭୂଷେ
ଉଚ୍ଚାର " ଅକାମାବଇ" ।
ଯାନ ବୃଥ ଯେଙ୍କି ଜଲେ ଯେସ୍ତିଣାଙ୍କୀ
ନବେଦଲେ ମୋକ୍ଷ ପାଉଁ । ୭୦ ।
ଗୋଷ୍ଟି ଗୋଷ୍ଟ ବାଲି ପୁଣି ଦୀପାବଳୀ
ଭଉ ଭମ୍ଭାପଞ୍ଚ ନାବେ ।
ନାବେ ବସାଇଲେ ମିଳି ଏକାବେଳେ
ଦେଇ ହୁଲହୁଲ ସବେ । ୭୧ ।
ଶେଷ କଉ ତପ ଜୀବନ ପ୍ରଦୀପ
ଏବା ବହନାମ ନାବେ ।
କଉ ଭୁଲୁଞ୍ଜନ ସଲିଲ ପବନ
ଉସାଇଲେ ଉବାଣ୍ଡିବେ । ୭୨ ।
କେତେ ବାଡାପାର ପାଇ ନକ୍ଷୀପର
ହୋଇଗଲେ ସଙ୍ଗେ ସଙ୍ଗେ ।
କେତେ ବା ଅଦୂରେ ଅଟବଲେ ଗଭେ
କେବେ ଖସିଗଲେ ରଙ୍ଗେ । ୭୩ ।
ଚଢେ ଜୀବ, ନାଲା ଦେଖାଇଲେ ବାଲା
ଏବା ଦୀପଦାନ ଛଳେ ।
ଦେଖି ପାପୀମନ ଦହିଲା ଜ୍ଞାନ
ବୁଡଲା ବଡ଼ସ୍ନୁଜଳେ । ୭୪ ।

———

## ସୂର୍ଯ୍ୟାସ୍ତ ।

ଦିବାନ୍ତ; ଦିଗନ୍ତବ୍ୟାପୀ ଗଗନମଣ୍ଡଳ
ବିଭ୍ରମେ ବିବିଧ ରଙ୍ଗେ ଦେବ ଗ୍ରହରାଜ
ଅସ୍ତାଚଳ-ଚୂଡ଼ାରୂଢ଼, ହାସ୍ୟରେ ଯେସନ
ଛିନ୍ନ କୁରୁକୁଳଶୃଙ୍ଗ ଶରଶଯ୍ୟାପର
ନିସ୍ତେଜ ନିସ୍ପନ୍ଦ ମହାପ୍ରଶାନ୍ତ ମୂରତି
ଭୀଷ୍ମଲୀଳା ସାଙ୍ଗ ପୂର୍ବେ, ଅଥବା ମୃଗେନ୍ଦ୍ର
ଅବଦ୍ଧ ଲୌହପିଞ୍ଜରେ, ବେଷ୍ଟିତ ଚୌଦିଗେ
ଅସ୍ତ୍ରଶସ୍ତ୍ରଧାରୀ ମହା ଭୀମକଳେବର
ବ୍ୟାଧରୂପୀ ମେଘମାଳେ, ବିବିଧବରଣ
ଶୁଭ୍ର, କୃଷ୍ଣ, ରକ୍ତ, ନାନା ରଙ୍ଗରେ ରଞ୍ଜିତ
ଏବେ ଏବେ, ( ଯଥା ପବହବସେ ହସ୍ତେ
ଚିତ୍ରିତ ବିବିଧ ରଙ୍ଗେ ) ପ୍ରସାର କରିଲ
କବଳ ଉଲ୍ଲାସେ ଉଚ୍ଚି ପୂରବାକୁ ଅହା
ପ୍ରଭାହୀନ ପ୍ରଭାକର ଅନ୍ଧାର ଅଙ୍କେରେ ! !
ଦ ଅଧଃପତନ ଅହୋ ଅହାଣୁଁ ପାତାଳେ ! !
କେତେ ବିପର୍ଯ୍ୟୟ ଅହା ଦିବସ ଶର୍ବରୀ ! !
ଏ ଦୁର୍ଦ୍ଦଶାପନ୍ନ ଏବେ ମଧ୍ୟାହ୍ନ ମାର୍ତ୍ତଣ୍ଡ
ପ୍ରଚଣ୍ଡ ଯୌବନପ୍ରଭା ଯାର 'କରୁଥିଲା
ଚରାଚରେ ଓଷ୍ଠାଗତ ପ୍ରାଣ — ନରନାରୀ
ରୁଦ୍ଧ ଚିତ୍ରାବନ୍ତିକଉଚ୍ଚହର୍ମ୍ୟଦ୍ୱାର
ଅସ୍ଥିର-ଜୀବନ ବିନା ଅନଳ ସଲିଳ

ସୁଶୀତଳ; ଲୋଲଜିହ୍ୱ ଯାବତ ପଶୁଏ
ଅବସନ୍ନ ଧରଣୀଶାୟୀ; କାଣ୍ଡଜ୍ଞାନଶୂନ୍ୟ
ଫଣୀ ଭେକପୃଷ୍ଠାଶ୍ରୟୀ; ବାଷ୍ପାରତ ଚକ୍ଷୁ
ପକ୍ଷୀଗଣ ଶାଖେ ରବହୀନ; ତରୁ ଲତା
ମ୍ରିୟମାଣ, ନତଶିର; ଦପେ ଦପେ ଦପେ
ପ୍ରଜ୍ୱଳିତ ଦାବାନଳ, ତପ୍ତଲୌହ ସମ
ମଳୟ ଅନଳ, ସୁଧାମୟ ଜଳସ୍ରୋତେ;
ତପନ୍ତି ପାଷାଣ ଅହୋ—ଅନ୍ୟ କ କହିବା ?
ଏଣେ ପଶ୍ଚିମେ ପ୍ରଭାକର ପ୍ରଭାହୀନ
ଏବେ; ଅବା ପ୍ରଚଣ୍ଡତର ନାହିଁ ମନୋହର.
ବହ୍ନିପିଣ୍ଡ କାଞ୍ଚନରୂପ—ତମୋନାଶକାରୀ
ଦିଗ୍‌ବଳୟୋପର ପ୍ରାନ୍ତକକ୍ଷରେ ଯାହା
ଦରଶନେ ବିକଶିତା କମଳିନୀ ସତୀ
ଗତପ୍ରାଣା; ଗୁଞ୍ଜରଇ ଅଳି; କାକ ପିକ
ଗାଏ ଗୀତ ସୁଲଳିତ କଣ୍ଠର ଝଙ୍କାରେ;
ମନ୍ଦମାରୁତ ହିଲ୍ଲୋଳେ ନାଚେ ତରୁ ଲତା
ସୁମନ ମଣ୍ଡିତ ଶିରେ ଦମ୍ଭାରମ୍ଭେ ଧାଏ
ପୁଷ୍ପମଳେ ବାଷ୍ପ ତୃଣ ଶସ୍ୟ ଅଗ୍ରମୂଳେ;
ପ୍ରବେଶ ମାନବ କାର୍ଯ୍ୟକ୍ଷେତ୍ରେ ତୋଷମନେ
ଦାନ ଧ୍ୟାନ ସାଧୁକାର୍ଯ୍ୟ ଆରମ୍ଭି ଉଲ୍ଲାସେ;
ନବ ପ୍ରାଣ ନବଭାବ ସଙ୍ଗରେ ଚୌଦିଗେ
ମାଧୁର୍ଯ୍ୟ ଲହରୀ ଖେଳେ ଦଶଦିଗେ ପୂରି,

ରାମଚନ୍ଦ୍ର ଚାଲେ ଯଥା ଅଯୋଧ୍ୟା ଭବନେ ।
ହାୟରେ ସେ ଦୃଶ୍ୟ ଏବେ ନିଶାର ସ୍ୱପନ
ଥିଲେହେଁ ତପନ ଚକ୍ରବାଳୋପରି କିନ୍ତୁ
ସ୍ଥାନାନ୍ତରେ, ବିପଶ୍ଚିତ ବେଗେ; ଅଧୋଗାମୀ
ପଲକେ ପଲକେ ଅହା ଜ୍ୟୋତିପ୍ରଭାହୀନ,
ପ୍ରସାର ଚୌଦିଗେ କ୍ଷୀଣ ଥର ଥର କର
ସ୍ୱର୍ଣ୍ଣେ ଚରାଚର ହେର ଥିବାରେ ଯେସନ
ବାଳଶଯ୍ୟୋପରି ବୃଦ୍ଧ ମୋହମାୟାବଶେ
ବୁଲାଏ ଦୁର୍ବଳ ହସ୍ତ ପୁତ୍ର କନ୍ୟା ଶିରେ ।
ବିଷାଦ ତରଙ୍ଗ ଖେଳେ ଦେଖି ରବି-ଅସ୍ତ
ଗମନଉନ୍ମୁଖ; ନିଶା-ନୀହାରାବୃତ
ଗ୍ରାସେ ସବୁରି ବଦନ; ଜୀବନ ବିହଙ୍ଗ
କାନ୍ଦେ ଆର୍ତ୍ତନାଦେ; କାମ-କ୍ରୋଧ-ଲୋଭ-ମୋହ
ଗବାଦ ପଶୁଏ ଯାନ୍ତି ଅଧୋମୁଖେ ଧୀରେ
ଧୀରେ ଗୋଷ୍ଠ ଅଭିମୁଖେ; ବିବେକ ମାନବ
ଅପହୃତ କାର୍ଯ୍ୟ କ୍ଷେତ୍ରୁ—ମହାଶ୍ରାନ୍ତ କ୍ଲାନ୍ତ
ଦେଖ ତୃପ୍ତିରେଖାହୀନ ବଦନମଣ୍ଡଳ
ଆତ୍ମୀୟ ସ୍ୱଜନ ଯଥା ସାରୁଁ ଜୀବଲୀଳା ।
ମୁଦ୍ରିତ କମଳନେତ୍ର ଶୋଭାର ନିଧାନ
ଅଦୃଶ୍ୟ ତପନ ଗିରି ମୁଖେ ଶେଷେ ହାୟ
ନୀରବ ନିସ୍ତବ୍ଧ ସର୍ବେ; ରବିଅସ୍ତ କାଳେ
ଅନିର୍ବଚନୀୟ ଦୃଶ୍ୟ ଶତ ଧାତ ଗଣେ

ଅଜନେ ପ୍ରୟାସୀ ମୁହିଁ ମୃତ୍ୟୁ ବାଞ୍ଛାହୀନ
ହୋଇ ମତ୍ତ ଠିଇ ସଦା ଯାମାଚା ସୁଦାମ
ପ୍ରେମସୁଧା ଶୋକ-ତାପ-ତାପିତ ଜୀବନ ।

———

## ଦୁଃଖ ।

ଅଛ ନହିଁଛଣା ଜଗତେ ଦୁଃଖ,
କେବେ କେହୁ ତାଲୁ ନ ପାଏ ସୁଖ ।
ଏହା ତ ଜଗତ ଜାଣଇ ନାହିଁ
ସୁଖ ଦୁଃଖ ହୁହେଁ ଯାମଳ ଭାଇ ?
ଏକ ସଙ୍ଗେ ଅନ କେବେ ନ ଥିଣେ
ଲୁଚକାନ କେନ ଖେଳନ୍ତି ତ ସେ ?
ଗୋଟିକ ଅଭାବେ କେବେହେଁ ଆନ
ରହି ନ ପାରବ ଜଗତେ ପ୍ରାଣ ।
ଶୀତ କାଳେ ପାଏ ଜ୍ୟୁ ଅଦର,
ଗ୍ରୀଷ୍ମକାଳେ ଲୋଡ଼ା ଶୀତଳ ନୀର,
ନ ଥିଲେ ରଜନୀ କେତେର ତ ନରେ
କଳାଇଣ ଥାନ୍ତେ ପ୍ରୀତ ଦନରେ ?
ଯେଉଁଠାରେ ନାହିଁ ତମର ସ୍ରୋତ
ଅନ୍ଲେକରେ ତହିଁ କେ ବଦେ ପ୍ରୀତ ?
ନୀଳ ନଭେ କେତେ ଶୋଭା ଶଶୀର
ତଳା ପ୍ରାଣେ ଧଳା ସ୍ୱଦା ରୁଚିର ।

ଜାଣେ ଅଜଣା ଏ ଜଗତ ଦେଖି
ଏଡ଼େ ଜନ୍ତୁଙ୍କୁ ଦୁଃଖରୁ ରକ୍ଷି ?
ଦୁଃଖ ବିନା ସୁଖ ନୁହଇ ଜ୍ଞାନ
ମାନ ଦଣ୍ଡ ଏକ ଅନ୍ୟର ଜାଣ ।
ଗୃହସ୍ଥ ପ୍ରମାଣ ଦେଖ ଏହାର
ଦୁଷ୍ଟର ଦ୍ରବ୍ୟର ବଡ଼ ଆଦର
ଯାହା ଲଭେ ଯେତେ ଦୁଃଖ ସହଇ
ତାହା ଲଭେ ତେତେ ମନ ବଳଇ ।
ଏଣୁ କର ଦୁଃଖ ନ ହୁଅ ଦୁଃଖୀ
ତୁମ୍ଭ ବିନା କେହି ନୁହଇ ସୁଖୀ ।
ତୁମ୍ଭକୁ ଯେ ଜନ ସୁଖ ମଣଇ
ଅନନ୍ତ ସୁଖର ଭାଗୀ ହୁଅଇ ।

---

## ଉପେନ୍ଦ୍ର ଭଞ୍ଜ ।

ଭଞ୍ଜ-କୁଳ-କଞ୍ଜ ଉପଇନ୍ଦ୍ର କବିବର
ଧନ୍ୟ ଧନ୍ୟ ନୀଳକଣ୍ଠ ନୃପତି ନନ୍ଦନ
ଅବାଳବନିତାବୃନ୍ଦ ହୃଦୟ ଚନ୍ଦନ
ଭୂପତି-ସଦନର ମତ୍ତ ପିକବର ।
ପୂର୍ଣ୍ଣ ଶଶଧର କିବା ମଳୟ ପବନ
ପରି ସୁଧାଙ୍କଣା ତବ ସଙ୍ଗୀତଲହରୀ
ତରଙ୍ଗେ ତରଙ୍ଗେ ଦିଗ ହୃଦଗେ ପ୍ରସରି

ପ୍ରାସାଦେ କୁଟୀରେ କରେ ତତ୍ତ୍ୱ ବିନୋଦନ ।
ଦେଖେଁ ଯେବେ ପଥେ ଯାଉଁ ମଳିନ ବସନ
ଫିଙ୍ଗି ଧାନଧ୍ୟାନ ତବ ମଧୁରସଙ୍ଗୀତ
ଗାଇ ସବୁ ଦୁଃଖ ଭୁଲି ପ୍ରଫୁଲ୍ଲ ବଦନ
ତବ ଗୁଣ ଭାବି ହୁଏ ଚକିତ ବିସ୍ମିତ;
କବିର ଭାବୁକ ଧନ୍ୟ ସାର୍ଥକ ଜୀବନ
ତୁମ କାଳେ କାଳେ ପର ଦୁଃଖ ବିମୋଚନ ।

---

## ବଣମଲ୍ଲି ।

ଅଯତ୍ନ ସମ୍ଭୂତା, ସତ, ସୁନ୍ଦରୁ ହୋଇନ
ବଣମଲ୍ଲି ଶୁଭ୍ରାନନେ, ନିର୍ଜନ ବନେ
ପ୍ରକୃତି ଜନନୀ କ୍ରୋଡ଼େ ଖେଳୁ ପ୍ରେମମନେ
ତପୋବନେ ଶକୁନ୍ତଳା ପରି ଏ ଭ୍ରମିନ ।
ବିକାଶି ସୌରଭ ପ୍ରଭା ନିଶା ଅଗମନେ
ତୁମି ଖେଳେ ଦବାଗମେ ଶୋଭିଲେ ମାନିନ
ମଧୁପ ପ୍ରେମିକବର ପ୍ରେମ ଆଲିଙ୍ଗନେ
ନ ବଳାଇ ତତ୍ତ୍ୱ ତହିଁ ସୁଗନ୍ଧଦାୟିନ ?
ଜାଗେ ଚଳେ ମନେ ଘୋର ଦୁଶ୍ଚିନ୍ତାଜନକ
ଧିକ୍କ ଅଚରଣ ଏବା ସ୍ୱାର୍ଥ ନିର୍ଦ୍ଦୟ
ବ୍ୟବହାର ସୀତା ପ୍ରତି; ଦେବକୀ ନନ୍ଦନ
ଭୁଲିଲେ ଯେପରି ରାଧା ବ୍ୟଥିତ ହୃଦୟ ?

ନା ଘଟି କାହାର ପ୍ରେମ ତେଣୁ ତ ସୁମନ
ଜଗଦ୍ବ୍ୟାପୀ ପ୍ରେମ ପୂର୍ଣ୍ଣ କରନ୍ତୁ ଅଣୁ ।

---

## ମଧୁକର ।

ଫୁଲେ ଫୁଲେ ଉଡ଼ି ବସି ପୁଲକିତ ମନେ
ବିନ୍ଦୁ ବିନ୍ଦୁ ମକରନ୍ଦ କରୁ ଆହରଣ
ମଧୁକର, ଅମ୍ବପୂର୍ଣ କରୁ ବିସର୍ଜନ
ଯତ୍ନ ରଚ ମଧୁଚକ୍ର ଲାଗି ପ୍ରାଣପଣେ ।
କରୁ ଏତ ସବୁ ଶ୍ରମ ହରୁ ଶିଶୁଧନ
ଅକାତରେ ସ୍ୱାର୍ଥପର ଅମ୍ଲାନ ବଦନେ
କାହିଁ ଅଯାଚିତା ଜନେ ତୋର ଅପହଣ
କୃତଜ୍ଞତା ଲେଶ ବାଞ୍ଛେ ନ ସ୍ୱପ୍ନ ସ୍ୱପନେ ।
ହୁଅନ୍ତା କି ମଧୁଲବ କଦାପି ଭୁବନେ
ସାଧୁ ମଧୁକର ତୁହ ନୋହିଲେ କୃପଣ ?
ତୋ ପଥେ ପଥିକ କେହି ନୋହିଲେ ଜୀବନେ
ଚଳିତା ଅଚଳା ହୋଇ ମର୍ତ୍ତ୍ୟେ କି ସଦନ ?
ଦାନ ଯଜ୍ଞ ସାଧୁକାର୍ଯ୍ୟ କରିବେ କି ଜନେ
ହେବ କି ଜଗତ କେବେ ସୁଖନିକେତନ ?

---

## ଗୋଲାପ ।

ପୁଷ୍ପକୁଳ ଦେ ଗୋଲାପ ଶୋଭା ନିକେତନ
ଚିରଶ୍ରେଷ୍ଠ ବୋଲି ବଡ଼ ବିଖ୍ୟାତ ଭୁବନେ;

ଲବଣୀ ପୁତୁଳୀପର କୁଶଳୀ ଯତନେ
ଶ୍ରେଷ୍ଠ ବସ୍ତ୍ର ରଙ୍ଗ ପୀତ ଧବଳ ବରଣ
ଧର ବନ୍ଧୁରୂପା ଭୂମି; ଧନ୍ୟ ତୋ ଜୀବନ
ଶୁଣା ନ ଥିଲା ତୋ ନାମ କେବେ ବୃନ୍ଦାବନେ
କର ନ ଥିଲୁ ବା ସୀତା ଚତ୍ର ବନୋଦନ
ଯବନ ଅଳସୂ ଅପି ଭାରତ ସଦନେ
କପର ଲଭିଲୁ ତୁହି ରାଜସିଂହାସନ ?
ଧନ୍ୟ ତୋ ଜୀବନ, ଧନ୍ୟ ଗୁଣରତ୍ନଧାନ
ତୁଥାକର ହେଲେ ତୁହି ଶାସ୍ତ୍ରୀୟ ବଚନ
ହନୁ ଗୃହେ ନୀଚ ଜନ୍ମ ଏମନ୍ତ ସମ୍ମାନ
ଦେଖାଇଲୁ ଯହିଁ ତହିଁ ପୂଜ୍ୟ ଗୁଣୀଜନ
କ୍ଷେପ କର ଧର୍ମାଧର୍ମ ପରାପର ଜ୍ଞାନ ।

---

## ୰ ରାୟ୍ ନନ୍ଦକିଶୋର ଦାସ ବାହାଦୁର ।

ହାସ୍ୟତ ବଦନ ଅଙ୍କ ଉତ୍କଳ ଜନନୀ ।
ଅକାଳେ ଗ୍ରାସିଲା ରାହୁ ତବ ଧନମଣି । ୧ ।
ଅକସ୍ମାତେ ଦଶଦଗ ଘୋର ତମାଚ୍ଛନ୍ନ ।
ହାହାକାର ନାଦେବନ୍ଦେ ଧ୍ୱଂସପ୍ରଭଞ୍ଜନ । ୨ ।
ଅନର୍ଗଳ ଅଶ୍ରୁଧାର କରେ ଧରାବକ୍ଷ ।
ସାଧୁଜନ ଅମାନିଶା ଯେପରି ଉପନୀତ । ୩ ।
ପଦ୍ମ ଆକାରେ ଉଠେ ଶୋକର ତରଙ୍ଗ ।
ଛଟପଟ ଜରଜର ଜୀବନ ବିହଙ୍ଗ । ୪ ।

ଉତ୍କଳଦେଶାଦେ ପୂର୍ଣ୍ଣ ଯେମନ୍ତେ ଗୋପପୁର ।
ଗୃହେ ଯାଙ୍କ ନନ୍ଦସୁତ ଶ୍ରୀନନ୍ଦକିଶୋର । ୫ ।
ଅକ୍ରୂର ନାମରେ ରୂପେ କ୍ରୂର ହୋଇବିଧି ।
ଦେଲୁ ଏଦୁଃସହ ଦୁଃଖ ହର ହୃଦନିଧି । ୬ ।
ପୁତ୍ର ଶୋକେ କାନ୍ଦେ ଚିରଦୁଃଖିନୀ ଓଡ଼ିଶା ।
ଯଶୋଦାଙ୍କ ବଳି ଘୋର ଦୁଃଖରେ ବିବଶା । ୭ ।
କାନ୍ଦନ୍ତି ସୁଦାମ ଦାମ ଶ୍ରୀମଧୁସୂଦନ ।
କେତେକେତେ ପ୍ରିୟଜନ କେ କରିବ ଗଣନ । ୮ ।
କାନ୍ଦୁଛନ୍ତି ଗୋପାଙ୍ଗନା ପରି ତରୁଲତା ।
ମାଧବୀ, ଚମ୍ପକଲତା, ସୁଦେବୀ ଲଳିତା । ୯ ।
ଶୁଭ୍ର ଚନ୍ଦ୍ରାବଳୀ, ଚିତ୍ରା, ରମ୍ୟା, ଇନ୍ଦୁରେଖା ।
ରଙ୍ଗଦେବୀ, ତୁଙ୍ଗବିଦ୍ୟା, ସୁନାସୀ, ବିଶାଖା । ୧୦ ।
ଅଧୋମୁଖେ ଅନର୍ଗଳ ଅଶ୍ରୁବିସର୍ଜନ ।
କରନ୍ତି ନୀରବେ ସର୍ବେ, ଦାସ୍ୟରେ ଯେସନ ।୧୧।
ସରସ ତରୁର ଅଙ୍ଗେ ହେଲେ ଶସ୍ତ୍ରାଘାତ ।
ରସ ସ୍ରୋତେ ଧରିବକ୍ଷ ହୁଅଇ ପ୍ଲାବିତ ।୧୨।
ମଥୁରାଁବିଜୟୁଁ ବଳ ଦୁଃଖ ଘୋରତର ।
ଦେବାକୁ ବଳିଲା ମନ କେମନ୍ତେ ତୋହର ।୧୩।
ଅରେ ନିଦାରୁଣ ବିଧି ? ତୋହର ବାସନା ।
ଦେବତା ଦାନବ ନରେ ସତତ ଅଜଣା ।୧୪।
ଗୋପରୁ ମଥୁରାପୁର ନ ଥିଲା ସୁଦୂର ।
ରଖିଲୁ ନନ୍ଦଙ୍କୁ ଯହିଁ ଅଗମ୍ୟ ସେପୁର ।୧୫।

ଆଶା ନାହିଁ ଲଭିବାକୁ ପୁନଶ୍ଚ ମିଳନ ।
ଯେତେଦିନ ଯାଏ ଥିବ ଶରୀରେ ଜୀବନ । ୧୬ ।
ଆଉ କି ହେରିବ କେବେ ନୟନ ରଞ୍ଜନ ।
ନନ୍ଦସୁତ ପରି ନନ୍ଦ ପ୍ରସନ୍ନ ବଦନ ? ।୧୭।
କରିବ ଶ୍ରବଣରେ ଆଉ ପୀୟୂଷ ସେଚନ ।
ସାରଗର୍ଭ ସୁମଧୁର ସରସ ବଚନ ? ।୧୮।
ଓଡ଼ିଶା ଦୁଃଖରେ ଆଉ ହେବ କି କାତର ।
ସୁଗମ୍ଭୀର ସୁପ୍ରଶସ୍ତ ହୃଦୟ ନନ୍ଦର ? ।୧୯।
ହେବ କି ପ୍ରତିଭାଶାଳୀ ମସ୍ତିଷ୍କ ଚାଳିତ ।
ସାଧିବାକୁ ଚିରଦୁଃଖୀ ଓଡ଼ିଆଙ୍କ ହିତ ? ।୨୦।
କାର୍ଯ୍ୟକୁଶଳତା ପୁଣି ବୁଦ୍ଧି ବିଚକ୍ଷଣ ।
କରିବ କି ଓଡ଼ିଆଙ୍କ କଳଙ୍କ ମୋଚନ ? ।୨୧।
ରକ୍ଷି ରାଜାଙ୍କେ କର ପ୍ରଜାଦୁଃଖ ଦୂର ।
ଯହିଁ ତହିଁ ରଚିବ କି ନନ୍ଦ ଶାନ୍ତିପୁର ? ।୨୨।
ନ ମାରଣ ସାପ କମ୍ଭା ନ ଭାଙ୍ଗିଣ ବାଡ଼ି ।
ଦୈବ ତ ହେ ନନ୍ଦ ଆଜି ବିପଦ ବାହୁଡ଼ି ? ।୨୩।
କେମନ୍ତେ ହରିଲୁ ହାୟ ନିଦାରୁଣ ବିଧି ।
ଶାନ୍ତି-ପ୍ରେମ ଅବତାର କରୁଣା-ବାରିଧି ? ।୨୪।
କେମନ୍ତେ କାଟିଲୁ ବୃନ୍ତ ସୌରଭ ବିସ୍ତାରି ।
କଲିବେଳେ ଗନ୍ଧରାଜ ସୁମନ ପ୍ରବର ? ।୨୫।
ଛୋବର୍ କି ମଧୁକର ବଂଶୀକ ଗୁଞ୍ଜନ
ଦେଖି ଯାହା କାନ୍ତି ଛଟା ଚକିତ ଭୁବନ ? ।୨୬।

ସୁବର୍ଣ୍ଣ କେତକୀ ଚମ୍ପା ଅତ୍ୟନ୍ତ ସୁବାସ ।
ଭେଟିବାକୁ ମଧୁକର ଯାଏକି ତା ପାଶ ? ।୨୭।
ଛାଡ଼ିକି ପାରନ୍ତି ତେବେ ମନ ଉପବନ ।
ଯେବେ ଗନ୍ଧରାଜ ବିନା ସକଳ ସୁମନ- ।୨୮।
ଜାଣ କିଣ ଏଥି ଚମ୍ପା ଜବା ସେଫାଳିକା ।
ଟଗର ମାଧବୀ ବକୁଳ ସୁଗନ୍ଧ ମଲ୍ଲିକା ? ।୨୯।
ବନପରି ଗନ୍ଧରାଜ ନୁହେ ଅଭିମାନୀ ।
ଅବା ଦୁର୍ଯ୍ୟୋଧନ ପରି ବଡ ଅଭିମାନୀ ।୩୦।
ବନ୍ଧୁବତ୍ ଶଙ୍କା ତବ ସ୍ଥାନେ ନ କରେ ଚକିତ ।
ଅତିଶଯ୍ୟହୀନ ଗୁଣେ ସକଳେ ଅର୍ପିତ ।୩୧।
ନାତିଶୀତୋଷ୍ଣ ଗୁଣେ ମନ ହରୁଥିତ ।
ବସନ୍ତ ଅନିଳ ପରି ତୋଷୁଥିଲ ଚିତ୍ତ ।୩୨।
ଅକାଳେ ହାୟରେ ହରି ସେ ସାମ୍ୟ ମୂରତି ।
ଅଛିଲୁ ଜଗତେ ବିଧି ଏ କେଉଁ କାରଣ ? ।୩୩।
କି କହିବି ବିଧି ଆଉ ନ ସ୍ଫୁରେ ବଚନ ।
ଯାହା ତୋର ଇଚ୍ଛା ତାହା କର ରେ ସାଧନ ।୩୪।
ଘଟିବାର ଯାହା ଥିଲା ନ ହୁଅନ୍ତା ଆନ ।
ଶେଷରେ ମାଗୁଛି ମୋର ଏହି ନିବେଦନ ।୩୫।
ଦୁଃଖିନୀ ଓଡ଼ିଶାସୁତେ ଅତି ଦୀନହୀନ ।
ସୁଦୃଷ୍ଟି କରନ୍ତୁ ସଦା ଦେବ ଜନାର୍ଦ୍ଦନ ।୩୬।
ଶାନ୍ତିପୁରେ ଶାନ୍ତିପ୍ରିୟ ନନ୍ଦ ଲଭୁ ଶାନ୍ତି ।
ହରିପାଦେ-ପଦ୍ମେ ସଦା ମୋର ଭକ୍ତିମତି ।୩୭।

---

## ଜୀବନ-ସଂଗ୍ରାମ ।

ଅମଳ କମଳ ମୁଖେ ମୃଦୁ ଚନ୍ଦ୍ରହାସ
କ ଭାବନା ଭାବ ଶିଶୁ କରୁଛ ପ୍ରକାଶ ?
ଦେଖ ପରି ଗୃହଅଙ୍ଗେ ତରୁଲତାଗଣ
ଧରିଛ ବରଣ ଅତି ନୟନରଞ୍ଜନ,
ନାନାଜାତି ଫୁଲ ନାନା ରଙ୍ଗରେ ରଞ୍ଜିତ,
ସଉରଭେ ଦଶଦିଗ କରେ ଆମୋଦିତ,
ଖଗ ମୃଗ ହସ୍ତୀ ଅଶ୍ୱ ବିହଙ୍ଗମ ଗଣ
ନାଚେ କେବା ଗାଏ କେବା କରେ ବିଚରଣ ?
ଗୃହଅଙ୍ଗେ ଦେଖ ପରି ସହାସ୍ୟ ବଦନ ?
ଶ୍ରବଣ ଶୀତଳ କରେ ପୀୟୂଷ ବଚନ ?
ସାଦରେ ସକଳେ ପରି କରେ ସମ୍ଭାଷଣ ?
ଭାବ ପରି ମନୋହର ତେଣୁ ଏ ଭୁବନ ?
ନାହିଁ ତବ କାମ କ୍ରୋଧ ଜ୍ଞାନ ଆତ୍ମପର
ଶାରଦ ଆକାଶ ପରି ନିର୍ମଳ ଅନ୍ତର;
ଦେବଭାବ ଅଛି ଯେଣୁ ମନେ ବିଦ୍ୟମାନ
ଜଗତକୁ ସୁଧାମୟ କରୁଅଛ ଜ୍ଞାନ;
ମଣୁଅଛ ଯାହା ତୁମ୍ଭେ ଅପାର ସୁଖର
ଅଚିରେ ଦେଖିବ ତାହା କେଡ଼େ ଭୟଙ୍କର
ରଣକ୍ଷେତ୍ର, ଯହିଁ ସଦା ତୁମୁଳ ସଂଗ୍ରାମ,
ନୀରବେ ନିସ୍ତବ୍ଧେ ଚଳେ ନ ଥାଇ ବିରାମ;
ଯେଉଁ ରଣେ ତରୁଲତା ପଶୁ ପକ୍ଷୀ ନର
ଜାତି କୁଳ ରକ୍ଷାପାଇଁ ଯୁଝେ ନିରନ୍ତର,

ତରୁସଙ୍ଗେ ତରୁ ପୁଣି ନରସଙ୍ଗେ ନର
ନିଜ ୨ ସ୍ୱାର୍ଥ ପାଇଁ ଯୁଦ୍ଧେ ତତ୍ପର,
ଯେଉଁ ବନେ ଜାତି ଜୁହି କେତକୀ ମାଳତୀ
ସୌରଭ ବିସ୍ତାର କରେ ମନୋରମ ଅତି,
ଉଜ୍ଜ୍ୱଳଇ ଦଶଦିଗ ଲୋହିତ ପଳାଶ
ଧବଳଇ ଧରାତଳ ଶାରଦୀୟ କାଶ,
ଇନ୍ଦ୍ରଧନୁ ଛଟି ନାନା ରଙ୍ଗରେ ରଞ୍ଜିତ
ପୁଚ୍ଛ ଟେକି ନାଚେ କେକୀ ମୋହି ଜନଚିତ୍ତ,
ପଞ୍ଚମସ୍ୱରରେ କରି କୋକିଳ କୂଜନ
ଝରଇ ଶ୍ରୁତିରେ ସୁଧାବୃଷ୍ଟି ବରଷଣ ।
ଏହିପରି ଯେ ଯା' ଭାବେ ଯୁଦ୍ଧେ ନିରନ୍ତର
ପ୍ରତିଦ୍ୱନ୍ଦ୍ୱୀ ନିନ୍ଦେ ଦେହି ପ୍ରକାଶ୍ୟେ କାହାର ।
ସାଧିବାକୁ ନିଜ ନିଜ ନିଗୂଢ଼ କାମନା
ଯାହାର ଯା' ଅଛି ତାହା କରୁଛି ଚାଳନା
ଏ ବିଚିତ୍ର ରଣରଙ୍ଗ ବର୍ଣ୍ଣନା ଅତୀତ
ସହଜରେ ରଣବୋଲି ନୁହଇ ପ୍ରତୀତ
ନାହିଁ ଏଥି ରଣବାଦ୍ୟ ଅସ୍ତ୍ରର ଝନ୍‌ଝନା
ବିନା ରକ୍ତପାତେ କିନ୍ତୁ ଅସୀମ ବେଦନା
ନାହିଁ ପ୍ରୟୋଜନ ଏଥି ଅନ୍ୟ ଅସ୍ତ୍ର ଶସ୍ତ୍ର
ବଳ ଯାର ଜୟ ତାର ଏଥି ମୂଳମନ୍ତ୍ର ।
ବୁଦ୍ଧି-ଦେହବଳ ଯାର ଜିଣଇ ସେ ରଣ,
ଅଚିରେ ଦୁର୍ବଳ ଯାଏ ଶମନ ସଦନ ।

ସ୍ଥାବର ଜଙ୍ଗମ କେତେ ହେଲେଣି ନିଃଶେଷ
କହି ପାରେ ଏବେ ଅନ୍ୟ କେତେ ହେବେ ଧ୍ୱଂସ ?
ଅନନ୍ତ ସୁଖର ଯେବା ହୋଇବ ପ୍ରୟାସୀ
ଏ ରଣେ ଉଚିତ ତାର ହୋଇବା ଉଦାସୀ ।
ଭୂମି ପରି ଶିଶୁ ଯାର ନିର୍ମଳ ଅନ୍ତର
ଅନନ୍ତ ସୁଖର ଭାଗୀ ଅଟେ ସେହି ନର ।
ସ୍ୱାର୍ଥପର ଜଗତରେ ଅଦ୍ଭୁତ ସେ ଜନ
ନିଜସ୍ୱାର୍ଥ କରିଅଛି ଯେହୁ ବିସର୍ଜନ ।

— ——

ଝିଂଝୋଟି ଖମ୍ବାଜ—ଠୁଂରୀ ।
‘‘ ସଖି ଅଖିଠର୍ ’’ ଅବା
‘‘ଢଳଢାଲ ପରେ ବଲ ଭ୍ରମରବରେ’’ ବୃତ୍ତିରେ ।
ସେନ ନିବେଦନ ଅହେ ବନ୍ଧୁଗଣ
ବିଭୁଗୁଣ ଆସ କରିବା କୀର୍ତ୍ତନ ! ଘୋଷା ।
ଅଚିନ୍ତ୍ୟ ଅବ୍ୟକ୍ତ ମଙ୍ଗଳ ନିଧାନ
ଅବ୍ୟୟ ଅନନ୍ତ ଦେବ ଜନାର୍ଦ୍ଦନ । ୧ ।
ଦୟାର ସାଗର ବ୍ରହ୍ମାଣ୍ଡର ପତି
ଅନାଥର ନାଥ ଅଗତିର ଗତି । ୨ ।
ଉତ୍କଳର ପ୍ରଭୁ ହେଲେଣି ପ୍ରସନ୍ନ
ଦେଖ ଶୁଭତାର ଦେଖାଣି ଦର୍ଶନ । ୩ ।
ଜାତୀୟ ସାହିତ୍ୟ ଜାତୀୟ ଜୀବନ
ଅଦଳବଦଳେଣି ଉତ୍କଳ ନନ୍ଦନ । ୪ ।

ଉଠ ଭାଇ ଉଠ ଧାଇ ଏହୁ ଭାବ
'ସୌଭାଗ୍ୟରବିର ଦର୍ଶନ ମିଳିବ । ୫ ।

---

''ଆସ ଯିବପଥ ଡାକୁଛି ମୁରଲୀଧର''
ଗୀତରେ ।

ଆସ ଆସ ବନ୍ଧୁ ଗଣ   ହୋଇ ଏକମନ ପ୍ରାଣ
ଭକ୍ତି ପୁଷ୍ପାଞ୍ଜଳି ଦେଇ ପୂଜିବା ହେ ଜନାର୍ଦ୍ଦନ । ୦ ।
ଶୋକ ପାପ ତାପହର   ହରି ପ୍ରେମ ପାରାବାର
ଅଗତିର ଗତି ହେବ ବିପଦ ଦୁଃଖୀ-ଧନ ।
ଲଭି ତାଙ୍କ ଦୟାକର   ଦୁଃଖଦଶା ହେବ ଦୂର
ହେବ ସୁପ୍ରଭାତ ହେବ ଭାଗ୍ୟରବି ଦରଶନ ।
ଉଷା ଶୁଭ ଆଗମନ   ଦେଖିଲଣି ସୁଲକ୍ଷଣ
ଜାଗିବ ଜାତିପ୍ରେମ ହୋଇଲାଣି ଉଦ୍ଦୀପନ ।
ଜାତିପ୍ରେମ ସୁଧାପାନେ   ମତ୍ତହୋଇ ଏକମନେ
ଆସ ଆସ କରିବା ହେ ହରିଗୁଣ ସଙ୍କୀର୍ତ୍ତନ ।

— — —